କବି ଭର୍ତ୍ତୃହରି-ବିରଚିତ

# ବୈରାଗ୍ୟ-ଶତକ

ସମ୍ପାଦକ:

ଡକ୍ଟର ଭଗବାନ ପଣ୍ଡା

ଗ୍ରନ୍ଥମନ୍ଦିର

ପ୍ରକାଶକ : ଅଭିରାମ ମହାପାତ୍ର

**ଗ୍ରନ୍ଥମନ୍ଦିର**, ବିନୋଦବିହାରୀ, କଟକ-୨

ମୁଦ୍ରକ : ପ୍ରମୋଦ ମିଶ୍ର

**ଜଗନ୍ନାଥ ପ୍ରିଣ୍ଟର୍ସ**, ମେରଆବଜାର, କଟକ-୧

ପ୍ରଥମ ମୁଦ୍ରଣ : ୧୯୮୯

ମୂଲ୍ୟ : ଟ ୯-୦୦

# ମୁଖବନ୍ଧ

ସଂସ୍କୃତ ସାହିତ୍ୟର ଇତିହାସରେ କବି ଭର୍ତ୍ତୃହରିଙ୍କ ନାମ ଚିରସ୍ମରଣୀୟ । ଭାରତରେ ସର୍ବତ୍ର ଭର୍ତ୍ତୃହରିଙ୍କ ଶତକତ୍ରୟ ସୁବିଦିତ, ସୁପ୍ରଚାରିତ ଓ ସମାଦୃତ ହୋଇଥିଲେ ମଧ୍ୟ ତାଙ୍କର ପରିଚୟ ଓ ସମୟ ବିଷୟରେ ଏପର୍ଯ୍ୟନ୍ତ କୌଣସି ନିର୍ଦ୍ଦିଷ୍ଟ ତଥ୍ୟ ଲୋକଲୋଚନକୁ ଆସିପାରିନାହିଁ । ଆଲୋଚକମାନେ ଭର୍ତ୍ତୃହରିଙ୍କ ସମ୍ବନ୍ଧରେ ନାନାପ୍ରକାର ମତ ପ୍ରକାଶ କରିଥିବାର ଦେଖାଯାଏ, କାରଣ କବିଙ୍କ ରଚନାବଳୀରୁ ତାଙ୍କ ପରିଚୟ ସମ୍ବନ୍ଧରେ କୌଣସି ସୂଚନା ମିଳେ-ନାହିଁ । କବି ମାଳବର ଏକ କ୍ଷତ୍ରିୟ ପରିବାରରେ ଜନ୍ମ ଗ୍ରହଣ କରିଥିଲେ ବୋଲି କିମ୍ବଦନ୍ତୀରୁ ଜଣାଯାଏ । ସେହି କିମ୍ବଦନ୍ତୀ ଅନୁସାରେ କବିଙ୍କ ପିତା ଗନ୍ଧର୍ବସେନଙ୍କର ଦୁଇ ପତ୍ନୀ ଥିଲେ । ପ୍ରଥମା ପତ୍ନୀର ସନ୍ତାନ ଥିଲେ ଭର୍ତ୍ତୃହରି । ଦ୍ୱିତୀୟା ପତ୍ନୀ ଥିଲେ ଧାରାନଗରର ରାଜକନ୍ୟା । ତାଙ୍କଠାରୁ ବିକ୍ରମାଦିତ୍ୟ ଜନ୍ମଗ୍ରହଣ କରିଥିଲେ । ଧାରାନଗରର ନରପତି ଥିଲେ ସନ୍ତାନହୀନ । ତେଣୁ ଗନ୍ଧର୍ବସେନଙ୍କ ମୃତ୍ୟୁପରେ ତାଙ୍କ ଦୁଇପୁଅ ଭର୍ତ୍ତୃହରି ଓ ବିକ୍ରମ ମାତାମହଙ୍କ ଦ୍ୱାରା ଲାଳିତପାଳିତ ହୋଇଥିଲେ । ଦୁଇଭାଇ ସେଠାରେ ସମସ୍ତ ବିଦ୍ୟାରେ ପାରଦର୍ଶିତା ଲାଭକଲେ । ମାତାମହଙ୍କ ନିର୍ଦ୍ଦେଶରେ ଭର୍ତ୍ତୃହରି ରାଜପଦରେ ଅଭିଷିକ୍ତ ହେଲେ ଏବଂ ବିକ୍ରମାଦିତ୍ୟ ପ୍ରଧାନମନ୍ତ୍ରୀ ରୂପେ ରାଜ୍ୟ ପରିଚାଳନା କଲେ ।

ରାଜା ଭର୍ତ୍ତୃହରି ସାନଭାଇ ବିକ୍ରମ ଉପରେ ରାଜ୍ୟଭାର ଦେଇ ଆରମ୍ଭରୁ ଭୋଗବିଳାସରେ ନିମଜ୍ଜିତ ହୋଇପଡ଼ିଲେ । ସାନଭାଇ ବିକ୍ରମ ଯେତେ ପରାମର୍ଶ ଦେଲେ ମଧ୍ୟ ତାହା ଫଳବତୀ ହେଲା ନାହିଁ । ଶେଷରେ ଦୁଇଭାଇଙ୍କ ମଧ୍ୟରେ ବିବାଦ ସୃଷ୍ଟି ହେଲା ଏବଂ ବିକ୍ରମ ମନ୍ତ୍ରୀପଦ ତ୍ୟାଗକରି ଭାରତ ପର୍ଯ୍ୟଟନରେ ଚାଲିଗଲେ । ରାଜ୍ୟରେ ଚରମ ଅରାଜକତା ସୃଷ୍ଟି ହେଲା । ଦିନେ ଜନୈକା ମହିଷୀ ଅନଙ୍ଗସେନା, ପଦ୍ମାକ୍ଷୀ ବା ଭାନୁମତୀ

ନିଜର ଦୁଷ୍କରିତତା ପ୍ରମାଣ ହୋଇଯିବାରୁ ଭର୍ତ୍ତୃହରିଙ୍କ ଆଗରେ ଆତ୍ମହତ୍ୟା କଲେ । ଆଉ ଦିନେ ମିଥ୍ୟା ସମ୍ବାଦରେ ମର୍ମାହତ ହୋଇ ରାଜା ଭର୍ତ୍ତୃହରିଙ୍କ ଅନ୍ୟତମା ପତିବ୍ରତା ମହିଷୀ ପିଙ୍ଗଳା ମୃତ୍ୟୁବରଣ କଲେ । ଏହି ଘଟଣାରେ ଅତ୍ୟଧିକ ଦୁଃଖିତ ଓ ମର୍ମାହତ ହୋଇ ଭର୍ତ୍ତୃହରି ରାଜ୍ୟ ତ୍ୟାଗ କରି ସନ୍ନ୍ୟାସ ଗ୍ରହଣ କରିଥିଲେ । ତାଙ୍କ ସାନଭାଇ ବିକ୍ରମ ରାଜ୍ୟଭାର ଗ୍ରହଣ କରି ରାଜା ବିକ୍ରମାଦିତ୍ୟ ନାମରେ ପରିଚିତ ହୋଇଥିଲେ ।

ଭାରତର କେତେକ ଅଞ୍ଚଳରେ ଭର୍ତ୍ତୃହରିଙ୍କ ଜନ୍ମ ସମ୍ବନ୍ଧରେ ଅନ୍ୟ ଏକ ଜନଶ୍ରୁତି ପ୍ରଚଳିତ ଥିବାର ଜଣାଯାଏ । ସେଥିରୁ ସୂଚନା ମିଳେ, ଚନ୍ଦ୍ରଗୁପ୍ତ ନାମ୍ନରେ ଜନୈକ ବ୍ରାହ୍ମଣଙ୍କର ଚାରିବର୍ଣ୍ଣରୁ ଚାରୋଟି ପତ୍ନୀ ଥିଲେ । ବ୍ରାହ୍ମଣୀ ଗର୍ଭଜାତ ପୁତ୍ର ବରରୁଚି, କ୍ଷତ୍ରିୟା ଗର୍ଭଜାତ ପୁତ୍ର ବିକ୍ରମ, ବୈଶ୍ୟା ଗର୍ଭଜାତ ପୁତ୍ର ଭଟ୍ଟି ଓ ଶୂଦ୍ରା ଗର୍ଭଜାତ ପୁତ୍ର ଭର୍ତ୍ତୃହରି ନାମରେ ପରିଚିତ ଥିଲେ । ବିକ୍ରମାଦିତ୍ୟ ରାଜପଦରେ ଅଭିଷିକ୍ତ ହେବାପରେ ଭଟ୍ଟି ଓ ଭର୍ତ୍ତୃହରି ତାଙ୍କ ଅଧୀନରେ ମନ୍ତ୍ରୀରୂପେ ଏବଂ ବରରୁଚି ରାଜପରିଷଦର ପ୍ରଧାନ ପଣ୍ଡିତରୂପେ ନିଯୁକ୍ତ ହୋଇଥିଲେ । ନବରତ୍ନ ସମ୍ବନ୍ଧରେ ପ୍ରଚଳିତ ଶ୍ଳୋକରୁ ଏ ବିଷୟରେ କିଞ୍ଚିତ୍ ସୂଚନା ମିଳେ । ସେହି ଶ୍ଳୋକଟି ହେଲା—

> ଧନ୍ୱନ୍ତରିକ୍ଷପଣକାମରସିଂହଶଙ୍କୁ-
> ବେତାଳଭଟ୍ଟଘଟକର୍ପରକାଳିଦାସାଃ ।
> ଖ୍ୟାତୋ ବରାହମିହିରୋ ନୃପତେଃ ସଭାୟାଂ
> ରତ୍ନାନି ବୈ ବରରୁଚିର୍ନବ ବିକ୍ରମସ୍ୟ ॥

ଏହି ଶ୍ଳୋକ ବର୍ଣ୍ଣିତ କ୍ଷପଣକ କବି ଭର୍ତ୍ତୃହରିରୂପେ ଗୃହୀତ । ଭର୍ତ୍ତୃହରିଙ୍କ ସମୟ ନିର୍ଦ୍ଧାରଣ ପ୍ରସଙ୍ଗରେ କେତେକ ଆଲୋଚକ ଉଦ୍ଧୃତ ଶ୍ଳୋକକୁ ଭିତ୍ତିଭୂମି ରୂପେ ସ୍ୱୀକାର କରନ୍ତି । ଅନ୍ୟ କେତେକଙ୍କ ମତରେ ଭର୍ତ୍ତୃହରି ଚଉଦବର୍ଷ ରାଜତ୍ୱ କରିଥିଲେ । ତେଣୁ ରାଜା ବିକ୍ରମଙ୍କ (୫୭ ଖ୍ରୀ:ପୂ:) ପୂର୍ବରୁ କବି ଭର୍ତ୍ତୃହରିଙ୍କ ସମୟ ଖ୍ରୀଷ୍ଟପୂର୍ବ ୭୦ ବୋଲି ସ୍ଥିର କରା-ଯାଇପାରେ । ପଣ୍ଡିତ ଦୁର୍ଗାପ୍ରସାଦ ଓ ଅନ୍ୟ କେତେକଙ୍କ ମତରେ ଭର୍ତ୍ତୃହରି ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀର ମଧ୍ୟଭାଗରେ ବର୍ତ୍ତମାନ ଥିଲେ ।

ଚୀନ ପରିବ୍ରାଜକ ଇତ୍‌ସିଂ (୬୯୧ ଖ୍ରୀ:ଅ:) ତାଙ୍କ ଭାରତ ଭ୍ରମଣ ବୃତ୍ତାନ୍ତରେ ଭର୍ତ୍ତୃହରିଙ୍କ ସମ୍ବନ୍ଧରେ କେତେକ ସୂଚନା ଦେଇଛନ୍ତି । ସେଥିରୁ ବ୍ୟାକରଣକାର ଭର୍ତ୍ତୃହରି ୬୫୧ ଖ୍ରୀଷ୍ଟାବ୍ଦରେ ଦେହତ୍ୟାଗ କରିଥିବାର ଜଣାଯାଏ । ବ୍ୟାକରଣପ୍ରଣେତା ଭର୍ତ୍ତୃହରି ବାକ୍ୟପଦୀୟ, ମହାଭାଷ୍ୟଦୀପିକା, ଶବ୍ଦଧାତୁସମୀକ୍ଷା, ମୀମାଂସାଭାଷ୍ୟ ଓ ବେଦାନ୍ତସୂତ୍ରବୃତ୍ତି ରଚନା କରିଥିଲେ । ରାମାୟଣ ସମ୍ବନ୍ଧୀୟ 'ଭଟ୍ଟିକାବ୍ୟ' ମଧ୍ୟ ଭର୍ତ୍ତୃହରିଙ୍କ ରଚନା । ତେଣୁ କେତେକ ଆଲୋଚକ ବ୍ୟାକରଣକାର, ଦାର୍ଶନିକ ଓ କାବ୍ୟକାର ରୂପେ ତିନିଜଣ ଭର୍ତ୍ତୃହରି ଥିବାର ମତ ଦେବାବେଳେ ଆଉ କେତେକ ଶତକତ୍ରୟର ରଚୟିତା ଓ 'ବାକ୍ୟପଦୀୟ' ବ୍ୟାକରଣ ଗ୍ରନ୍ଥର ରଚୟିତା ଭର୍ତ୍ତୃହରିଙ୍କୁ ଅଭିନ୍ନ ବ୍ୟକ୍ତି ବୋଲି ମନେକରନ୍ତି । କିନ୍ତୁ ଏହି ସିଦ୍ଧାନ୍ତ ପ୍ରମାଣ ଆଧାରିତ ନୁହେଁ । ବିଭିନ୍ନ ଦୃଷ୍ଟିରୁ ବିବେଚନା କରି ଆଲୋଚକ ପଣ୍ଡିତ ଗୋପୀନାଥ ପୁରୋହିତ ତାଙ୍କ 'ଭର୍ତ୍ତୃହରି ଶତକ' (ବମ୍ବେ, ୧୯୧୪) ଗ୍ରନ୍ଥରେ ଓ କାଶୀନାଥ ତ୍ର୍ୟମ୍ବକ ତେଲଙ୍ଗ ତାଂକ ଗ୍ରନ୍ଥରେ (ବମ୍ବେ ସଂସ୍କୃତ ସିରିଜ, ଭାଗସଂଖ୍ୟା-୧୧) ଯେଉଁ ସିଦ୍ଧାନ୍ତ ନେଇଛନ୍ତି ସେଥିରୁ ଭର୍ତ୍ତୃହରିଂକ ସମୟ ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀ ବୋଲି ଜଣାଯାଏ । ଅନେକ ଏହି ମତକୁ ସ୍ୱୀକାର କରିଛନ୍ତି ।

କବି ଭର୍ତ୍ତୃହରି ନୀତିଶତକ, ଶୃଙ୍ଗାରଶତକ ଓ ବୈରାଗ୍ୟଶତକ ନାମରେ ଶତକତ୍ରୟର ରଚୟିତା ରୂପେ ସୁବିଦିତ । କିନ୍ତୁ ଏହି ଶତକ ତିନୋଟି ଭର୍ତ୍ତୃହରିଙ୍କ ରଚନା କି ସଂଗୃହୀତ ଶ୍ଳୋକ ସମଷ୍ଟି, ସେ ବିଷୟରେ ମଧ୍ୟ ମତଭେଦ ଅଛି । କାରଣ ଭାରତରେ ଏହି ଶତକତ୍ରୟର ଯେତୋଟି ସଂସ୍କରଣ ମିଳିଛି, ସେଥିରେ ଶ୍ଳୋକ, ଶ୍ଳୋକସଂଖ୍ୟା ଓ ବିଷୟବସ୍ତୁ ଦୃଷ୍ଟିରୁ ସମତା ପରିଲକ୍ଷିତ ହୁଏନାହିଁ । ପୂର୍ବବର୍ତ୍ତୀ କବିମାନଙ୍କର କେତେକ ଶ୍ଳୋକ ସାମାନ୍ୟ ପରିବର୍ତ୍ତନ ସହିତ ଆଲୋଚ୍ୟ ଶତକରେ ସନ୍ନିବେଶିତ ଥିବାର ଦେଖାଯାଏ । କେତେକ ସଂସ୍କରଣରେ ନୀତିଶତକର ଶ୍ଳୋକ ବୈରାଗ୍ୟଶତକରେ ଓ ବୈରାଗ୍ୟଶତକର ଶ୍ଳୋକ ଶୃଙ୍ଗାରଶତକରେ ଏବଂ ଶୃଙ୍ଗାରଶତକର ଶ୍ଳୋକ ନୀତି ବା ବୈରାଗ୍ୟଶତକରେ ଥିବାର ପରିଲକ୍ଷିତ ହୁଏ । ବିଭିନ୍ନ

ବୈଷମ୍ୟ ସତ୍ତ୍ୱେ ସେଥିରେ ଭାବ ଓ ଭାଷାର ସାମଞ୍ଜସ୍ୟ ରକ୍ଷାକରି ରଚିତ ଓ ଅନ୍ତର୍ଭୁକ୍ତ ହୋଇଥିବା ବହୁ ଶ୍ଳୋକ ଜଣକର ରଚନା ବୋଲି ସ୍ୱୀକାର କରାଯାଇପାରେ ।

ସଂସ୍କୃତ କାବ୍ୟ ସାହିତ୍ୟରେ ମୁକ୍ତକ କାବ୍ୟ ଏକ ସ୍ୱତନ୍ତ୍ର ଶୈଳୀରେ ରଚିତ । ଯେଉଁ ରଚନାରେ ପ୍ରତ୍ୟେକ ଶ୍ଳୋକ, ରସ, ଭାବ ଓ ପ୍ରତିପାଦ୍ୟ ବିଷୟ ଦୃଷ୍ଟିରୁ ସ୍ୱୟଂସମ୍ପୂର୍ଣ୍ଣ ତାହା ମୁକ୍ତକ କାବ୍ୟ ନାମରେ ଅଭିହିତ । ସେଥିପାଇଁ ଅଗ୍ନିପୁରାଣରେ କୁହାଯାଇଛି—ମୁକ୍ତକଃ ଶ୍ଳୋକ ଏବୈକଶ୍ଚ-ମତ୍କାରକ୍ଷମଃ ସତାମ୍ । କବି ଭର୍ତ୍ତୃହରିଙ୍କ ଶତକ ତ୍ରୟ ଏହି ମୁକ୍ତକ କାବ୍ୟ ଶ୍ରେଣୀର ଅନ୍ତର୍ଗତ । ନୀତି, ଶୃଙ୍ଗାର ଓ ବୈରାଗ୍ୟ ବିଷୟ ଆଧାରରେ ରଚିତ ହୋଇଥିବାରୁ ଶତକତ୍ରୟ ଯଥାକ୍ରମେ ନୀତିଶତକ, ଶୃଙ୍ଗାରଶତକ ଓ ବୈରାଗ୍ୟଶତକ ନାମରେ ଅଭିହିତ ।

କବି ଭର୍ତ୍ତୃହରିଙ୍କ ନୀତିଶତକରେ ଅଜ୍ଞ, ପଣ୍ଡିତ, ମାନ, ଶୌର୍ଯ୍ୟ, ଅର୍ଥ, ଦୁର୍ଜନ, ସୁଜନ, ପରୋପକାର, ଧୈର୍ଯ୍ୟ, କର୍ମ, ଦୈବ ପ୍ରଭୃତି ସମ୍ବନ୍ଧରେ ବିଭିନ୍ନ ଦିଗରୁ ଆଲୋକପାତ କରାଯାଇଛି । ନ୍ୟାୟଧର୍ମ ପ୍ରତିଷ୍ଠା, ଆତ୍ମ-ମର୍ଯ୍ୟାଦାର ସୁରକ୍ଷା ଓ ଶୃଙ୍ଖଳିତ ସମାଜ ଗଠନହିଁ ନୀତିଶତକ ରଚନାର ମୂଳ ଲକ୍ଷ୍ୟ । ସେହିପରି ଶୃଙ୍ଗାରଶତକରେ ସ୍ତ୍ରୀ ପ୍ରଶଂସା, ଶୃଙ୍ଗାର, ପକ୍ଷଦ୍ୱୟ (ଶୃଙ୍ଗାର ଓ ବୈରାଗ୍ୟ) ନିରୂପଣ, କାମିନୀନିନ୍ଦା, ସୁବିରକ୍ତ ଓ ଦୁର୍ବିରକ୍ତ ପଦ୍ଧତି, ଋତୁବର୍ଣ୍ଣନାଦି ପ୍ରସଙ୍ଗ ରହିଛି । ବୈରାଗ୍ୟଶତକରେ ତୃଷ୍ଣା, ବିଷୟ-ବାସନା ତ୍ୟାଗ, ଭିକ୍ଷାକାର୍ଯ୍ୟଜନିତ ଦୋଷ, ଭୋଗ୍ୟବସ୍ତୁର ନଶ୍ୱରତା, ମହାକାଳ ମହିମା, ଯତିନୃପତି ସମ୍ବାଦ, ସଂଯମ, ନିତ୍ୟାନିତ୍ୟବସ୍ତୁ ବିଚାର, ଶିବାର୍ଚ୍ଚନ, ଅବଧୂତଚର୍ଯ୍ୟା ବର୍ଣ୍ଣିତ ହୋଇଛି । ସର୍ବୋପରି ଭର୍ତ୍ତୃହରିଙ୍କ ରଚନାରେ କାବ୍ୟିକ ସୌନ୍ଦର୍ଯ୍ୟ ସୁରକ୍ଷିତ ହେବା ସଙ୍ଗେ ସଙ୍ଗେ ନୀତି ଉପଦେଶ, ମନସ୍ତାତ୍ତ୍ୱିକ ବିଶ୍ଳେଷଣ, ଦର୍ଶନ ଓ ଆଧ୍ୟାତ୍ମ ଜ୍ଞାନର ଅପୂର୍ବ ସମନ୍ୱୟ ସାଧିତ ହୋଇଛି । ସେହି ଦୃଷ୍ଟିରୁ ଭାରତରେ ସର୍ବତ୍ର ଏହା ସର୍ବାଧିକ ଆଦୃତି ଲାଭକରିଛି ।

ପ୍ରସ୍ତୁତ ପୁସ୍ତକରେ ତିନୋଟି ସଂସ୍କରଣରେ ସମତା ରକ୍ଷା କରୁଥିବା ଶ୍ଳୋକଗୁଡ଼ିକୁ ମୂଳ ପାଠ ରୂପେ ନେଇ ଅନ୍ୟ ଅଧିକ ଶ୍ଳୋକଗୁଡ଼ିକ ପରିଶିଷ୍ଟରେ ଦିଆଯାଇଛି । ସାଧାରଣ ପାଠକଙ୍କୁ ସଂସ୍କୃତ ସାହିତ୍ୟର ରତ୍ନଭଣ୍ଡାର ବିଷୟରେ ସାମାନ୍ୟ ଧାରଣା ଦେବାପାଇଁ ଏହି ଅନୁବାଦ ପ୍ରସ୍ତୁତ ହୋଇଛି । ସୁଧୀ ପାଠକବର୍ଗ ତ୍ରୁଟି ବିଚ୍ୟୁତି ପ୍ରତି ଦୃଷ୍ଟି ନଦେଇ ଏଥିରୁ ସାମାଜିକ ବ୍ୟବହାର, ଆଚରଣ ଓ କର୍ତ୍ତବ୍ୟ ସମ୍ବନ୍ଧରେ ଯତ୍କିଞ୍ଚିତ୍ ସୂଚନା ପାଇପାରିଲେ ମୋର ଶ୍ରମ ସାର୍ଥକ ହେବ ।

ପରିଶେଷରେ ମୋର ଏହି ଉଦ୍ୟମକୁ ସର୍ବଥା ସାଫଲ୍ୟ ମଣ୍ଡିତ କରିବାରେ ପ୍ରେରଣା ଦେଇ ସହାୟକ ହୋଇଥିବାରୁ ଗ୍ରନ୍ଥମନ୍ଦିରର ଅଧିକାରୀ ଶ୍ରୀଯୁକ୍ତ ଅଭିରାମ ମହାପାତ୍ରଙ୍କୁ ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି ।

କୁମାରପୂର୍ଣ୍ଣିମା<br>୧୪ ଅକ୍ଟୋବର, ୧୯୮୯

ବିନୀତ<br>**ଭଗବାନ ପଣ୍ଡା**

# ଶ୍ଳୋକାନୁକ୍ରମଣିକା

# ଭର୍ତ୍ତୃହରି ବୈରାଗ୍ୟ-ଶତକ

## ଶ୍ରୀଜଗନ୍ନାଥାୟ ନମଃ

ଦିକ୍‌କାଲାଦ୍ୟନବଚ୍ଛିନ୍ନାନନ୍ତଚିନ୍ମାତ୍ରମୂର୍ତ୍ତୟେ ।
ସ୍ୱାନୁଭୂତ୍ୟୈକନାଥାୟ ନମଃ ଶାନ୍ତାୟ ତେଜସେ ॥୧॥

ଅନ୍ୱୟ—ଦିକ୍‌କାଲାଦ୍ୟନବଚ୍ଛିନ୍ନାନନ୍ତଚିନ୍ମାତ୍ରମୂର୍ତ୍ତୟେ (ଦିଗ, କାଳାଦିରେ ସୀମାବଦ୍ଧ ହୋଇ ନଥିବା, ଅନନ୍ତ, ଚିନ୍ମୟ ମୂର୍ତ୍ତିଙ୍କୁ) ସ୍ୱାନୁଭୂତ୍ୟୈକନାଥାୟ (ସ୍ୱ ଅନୁଭୂତିଦ୍ୱାରା ଅନୁଭବଯୋଗ୍ୟ) ଶାନ୍ତାୟ ତେଜସେ (ଶାନ୍ତ, ତେଜୋମୟ ଈଶ୍ୱରଙ୍କୁ) ନମଃ (ନମସ୍କାର) ।

ଅର୍ଥ—ଦିଗ ଓ କାଳାଦି ସୀମା ମଧ୍ୟରେ ଯେ ସୀମାବଦ୍ଧ ନୁହନ୍ତି, ଯେ ଅନନ୍ତ, ଜ୍ଞାନମୟ ଓ ଚିନ୍ମୟ ମୂର୍ତ୍ତି, ନିଜର ଅନୁଭୂତି ହିଁ ଯାହାଙ୍କୁ ଜାଣିବାର ଏକମାତ୍ର ଉପାୟ, ସେହି ଜ୍ୟୋତିର୍ମୟ ବ୍ରହ୍ମଙ୍କୁ ମୁଁ ପ୍ରଣାମ କରୁଛି ।

ଚୂଡ଼ୋତ୍ତଂସିତଚାରୁଚଂଦ୍ରକଳିକାଚଞ୍ଚଚ୍ଛିଖାଭାସୁରୋ
ଲୀଳାଦଗ୍ଧବିଲୋଲକାମଶଲଭଃଶ୍ରେୟୋଦଶାଗ୍ରେସ୍ଫୁରନ୍ ।
ଅନ୍ତଃସ୍ଫୂର୍ଜଦପାରମୋହତିମିରପ୍ରାଗ୍‌ଭାରମୁଚ୍ଛେଦୟଂ-
ଶ୍ଚେତଃ ସଦ୍ମନି ଯୋଗିନାଂ ବିଜୟତେ ଜ୍ଞାନପ୍ରଦୀପୋ ହରଃ ॥୨॥

ଅନ୍ୱୟ—ଚୂଡ଼ୋତ୍ତଂସିତ-ଭାସୁରଃ (ମସ୍ତକରେ ଯାହାର ଚଂଦ୍ରଲେଖା ଶୋଭାପାଉଛି) ଲୀଳାଦଗ୍ଧବିଲୋଲକାମଶଲଭଃ (ଚଞ୍ଚଳ କନ୍ଦର୍ପ ରୂପକ ପତଙ୍ଗକୁ ଯେ ଭସ୍ମ କରିଛନ୍ତି) ଶ୍ରେୟୋଦଶାଗ୍ରେ (ଶ୍ରେୟ ଅର୍ଥାତ୍ ସୁକୃତ ରୂପକ ସଳିତା ଅଗ୍ରଭାଗରେ) ସ୍ଫୁରନ୍ (ପ୍ରକାଶମାନ) ଅନ୍ତଃସ୍ଫୂର୍ଜଦପାର - ମୁଚ୍ଛେଦୟନ୍ (ଅନ୍ତଃକରଣର ସମସ୍ତ ଅଜ୍ଞାନ ଅନ୍ଧକାରକୁ ଦୂରକରୁଥିବା) ଜ୍ଞାନ-

ପ୍ରଦୀପଃ (ଜ୍ଞାନ ପ୍ରଦୀପ ସ୍ୱରୂପ) ହରଃ (ଶିବ) ଯୋଗିନାଂ (ଯୋଗୀମାନଙ୍କର) ଚେତସି (ହୃଦୟରେ) ବିଜୟତେ (ବିରାଜିତ ଅଛନ୍ତି) ।

ଅର୍ଥ—ମସ୍ତକରେ ଅଳଙ୍କାର ସ୍ୱରୂପ ଶୋଭିତ ଚନ୍ଦ୍ରର ସ୍ନିଗ୍ଧକିରଣ ଦ୍ୱାରା ଯେ ସମୁଜ୍ଜ୍ୱଳ, କାମଦେବଙ୍କୁ ପତଙ୍ଗ ପରି ଅନାୟାସରେ ଯେ ଦଗ୍ଧ କରିଥିଲେ, ସମସ୍ତଙ୍କର କଲ୍ୟାଣପାଇଁ ଯେ ପ୍ରକାଶମାନ, ଅନ୍ତରର ଅଜ୍ଞାନ ଅନ୍ଧକାରକୁ ଯେ ସମୂଳେ ବିନାଶ କରନ୍ତି, ସେହି ଜ୍ଞାନାଲୋକପ୍ରଦାନକାରୀ ପ୍ରଦୀପ ସଦୃଶ ଶିବ ଯୋଗୀମାନଙ୍କ ହୃଦୟରେ ବିରାଜିତ ଅଛନ୍ତି ।

ନ ସଂସାରୋତ୍ପନ୍ନଂ ଚରିତମନୁପଶ୍ୟାମି କୁଶଳଂ
ବିପାକଃ ପୁଣ୍ୟାନାଂ ଜନୟତି ଭୟଂ ମେ ବିମୃଶତଃ ।
ମହଦ୍‌ଭିଃ ପୁଣ୍ୟୌଘୈଶ୍ଚିରପରିଗୃହୀତାଶ୍ଚ ବିଷୟା
ମହାନ୍ତୋ ଜାୟନ୍ତେ ବ୍ୟସନମିବ ଦାତୁଂ ବିଷୟିଣାମ୍ ॥୩॥

ଅନ୍ୱୟ—ସଂସାରୋତ୍ପନ୍ନଂ (ସଂସାରସମ୍ବନ୍ଧୀୟ) ଚରିତଂ (କର୍ମ) କୁଶଳଂ (ସୁଖକର) ନ ଅନୁପଶ୍ୟାମି (ଦେଖୁନାହିଁ) ବିମୃଶତଃ (ବିଚାରୁଥିବା) ମେ (ମୋର) ପୁଣ୍ୟାନାଂ ବିପାକଃ (ପୁଣ୍ୟକାର୍ଯ୍ୟର ପରିଣାମ) ଭୟଂଜନୟତି (ଭୟ ଜାତ କରୁଛି) ମହଦ୍‌ଭିଃ ପୁଣ୍ୟୌଘୈଃ (ବହୁ ପୁଣ୍ୟଦ୍ୱାରା) ଚିରପରି-ଗୃହୀତାଃ ବିଷୟାଃ ଚ (ସଞ୍ଚିତ ବିଷୟ ମଧ୍ୟ) ବିଷୟିଣାଂ (ସଂସାରୀମାନଙ୍କର) ବ୍ୟସନଂ ଦାତୁମ୍ ଇବ (ଦୁଃଖ ଦେବା ନିମିତ୍ତହିଁ) ମହାନ୍ତୋ ଜାୟନ୍ତେ (ଉତ୍ତରୋତ୍ତର ବୃଦ୍ଧିଲାଭ କରନ୍ତି) ।

ଅର୍ଥ—ସାଂସାରିକ ସୁଖଭୋଗ ଉଦ୍ଦେଶ୍ୟରେ ଅନୁଷ୍ଠିତ ପୁଣ୍ୟାଚରଣର ଫଳ ମଙ୍ଗଳକର ନୁହେଁ । ପୁଣ୍ୟକର୍ମର ପରିଣାମ ବିଚାରକଲେ ମନରେ ଭୟ ଜାତ ହେଉଛି । କାରଣ, ମହାପୁଣ୍ୟ ଫଳରେ ସଞ୍ଚିତ ଦୀର୍ଘକାଳବ୍ୟାପୀ ବିଷୟଭୋଗ ମଧ୍ୟ ବିଷୟାସକ୍ତ ବ୍ୟକ୍ତିକୁ ଦୁଃଖ ଦେବାପାଇଁ ବଢ଼ିଯାଇଥାଏ ।

ଭ୍ରାନ୍ତ୍ୱା ଦେଶମନେକଦୁର୍ଗବିଷମଂ ପ୍ରାପ୍ତଂ ନ କିଂଚିତ୍‌ଫଳଂ
ତ୍ୟକ୍ତ୍ୱା ଶୀଳକୁଳାଭିମାନମୁଚିତଂ ସେବା କୃତା ନିଷ୍ଫଳା ।

ଭୁକ୍ତଂ ମାନବିବର୍ଜିତଂ ପରଗୃହେଷ୍ୱାଶଙ୍କୟା କାକବତ୍
ତୃଷ୍ଣେ ବୈରଣି ପାପକର୍ମନିରତେ ନାଦ୍ୟାପି ସନ୍ତୁଷ୍ୟତି ॥୭॥

ଅନ୍ୱୟ—ଅନେକ ଦୁର୍ଗବିଷମଂ (ଅତି ଦୁର୍ଗମ) ଦେଶଂ (ଦେଶ, ସ୍ଥାନ) ଭ୍ରାନ୍ତ୍ୱା (ଭ୍ରମଣକରି) କିଞ୍ଚିତ୍ ଅପି ଫଳଂ (କୌଣସି ଫଳ, ଧନ) ନ ପ୍ରାପ୍ତମ୍ (ପାଇଲି ନାହିଁ) ଉଚିତଂ (ଯୋଗ୍ୟ) ଶୀଲକୁଲାଭିମାନଂ (ବଂଶ, ବିଦ୍ୟାଦି ମାନକୁ) ତ୍ୟକ୍ତ୍ୱା (ତ୍ୟାଗକରି) ନିଷ୍ଫଳା (ଅଯଥା) ସେବାକୃତା (ସେବାକଲି) ପରଗୃହେଷୁ (ଅନ୍ୟଘରେ) ଆଶଙ୍କୟା (ଭୟବଶତଃ) କାକବତ୍ (କୁଆପରି) ମାନବିବର୍ଜିତଂ (ମାନସମ୍ମାନ ଶୂନ୍ୟହୋଇ) ଭୁକ୍ତଂ (ଖାଇଲି) ତଥାପି ତୃଷ୍ଣେ ବୈରଣୀ (ଶତ୍ରୁ ରୂପିଣୀ ତୃଷ୍ଣା) ପାପକର୍ମନିରତେ (ପାପକର୍ମକାରିଣୀ) ଅଦ୍ୟାପି ନ ସନ୍ତୁଷ୍ୟତି (ଅଦ୍ୟାବଧି ସନ୍ତୁଷ୍ଟ ହେଲନାହିଁ) ।

ଅର୍ଥ—ଧନଲୋଭରେ ବହୁ ଦୁର୍ଗମ ସ୍ଥାନ ବୁଲିଲି, କିନ୍ତୁ କିଛି ଲାଭ ହେଲନାହିଁ । ବଂଶ ମର୍ଯ୍ୟାଦା ଛାଡ଼ି ଧନୀଙ୍କ ସେବା ବା ଚାକିରି କଲି, କିନ୍ତୁ ସବୁ ନିଷ୍ଫଳ ହେଲା । ଅପମାନିତ ହୋଇ ଅନ୍ୟ ଘରେ କୁଆପରି ଭୟଭୀତ ହୋଇ ଖାଇଲି । କିନ୍ତୁ ହେ ପାପକାରିଣୀ ତୃଷ୍ଣେ ! ତଥାପି ତୁମେ ଅଦ୍ୟାବଧି ସନ୍ତୁଷ୍ଟ ହେଲନାହିଁ ।

ଉତ୍ଖାତଂ ନିଧିଶଙ୍କୟା କ୍ଷିତିତଳଂ ଧ୍ମାତା ଗିରେର୍ଧାତବୋ
ନିସ୍ତୀର୍ଣ୍ଣଃ ସରିତାଂ ପତିର୍ନୃପତୟୋ ଯତ୍ନେନ ସନ୍ତୋଷିତାଃ ।
ମନ୍ତ୍ରାରାଧନତତ୍ପରେଣ ମନସା ନୀତା ଶ୍ମଶାନେ ନିଶାଃ
ପ୍ରାପ୍ତଃ କାଣବରାଟକୋଽପି ନ ମୟା ତୃଷ୍ଣେ ସକାମା ଭବ ॥୪॥

ଅନ୍ୱୟ—ନିଧିଶଙ୍କୟା (ଧନ ଆଶାରେ) କ୍ଷିତିତଳଂ (ବହୁସ୍ଥାନରେ ମାଟିତଳ) ଉତ୍ଖାତଂ (ଖୋଳିଲି) ଗିରେଃ ଧାତବଃ (ପର୍ବତର ଧାତୁକୁ) ଧ୍ମାତା (ଅଗ୍ନିରେ ଦଗ୍ଧକଲି) ସରିତାଂ ପତିଃ (ସାଗରକୁ) ନିସ୍ତୀର୍ଣ୍ଣଃ (ପାର ହେଲି) ନୃପତୟଃ (ରାଜାମାନଙ୍କୁ) ଯତ୍ନେନ ସନ୍ତୋଷିତାଃ (ଯତ୍ନର ସହିତ ସନ୍ତୁଷ୍ଟ କଲି) ମନ୍ତ୍ରାରାଧନତତ୍ପରେଣ ମନସା (ମନେମନେ ମନ୍ତ୍ରପୁରଶ୍ଚରଣ ପାଇଁ) ଶ୍ମଶାନେ ନିଶାଃ ନୀତାଃ (ଶ୍ମଶାନରେ ରାତି କଟାଇଲି) ମୟା (ମୁଁ)

କାଣବରାଟକଃ ଅପି (କଣାକଉଡ଼ିଟାଏ ବି) ନ ପ୍ରାପ୍ତଃ (ପାଇଲି ନାହିଁ) ତୃଷ୍ଣେ ସକାମା ଭବ (ତୃଷ୍ଣେ ! ତୁମେହିଁ ସଫଳ ହୁଅ) ।

ଅର୍ଥ—ଗୁପ୍ତ ଧନରତ୍ନ ପାଇବା ଆଶାରେ ବହୁ ସ୍ଥାନରେ ମାଟି ଖୋଳିଲି । ପାହାଡ଼ରୁ ଧାତୁପଥର ଆଣି ତରଳେଇଛୁ । ସମୁଦ୍ର ପାରହୋଇ ଦୂରବିଦେଶ ଯାଇଛୁ । ବହୁ ରାଜାଙ୍କୁ ସନ୍ତୁଷ୍ଟ କରିଛୁ । ଏକାଗ୍ର ଚିତ୍ତରେ ଶ୍ମଶାନରେ ବସି ସାରା ରାତି ମନ୍ତ୍ର ଜପ କରିଛୁ । କିନ୍ତୁ ଏତେ କଷ୍ଟ ସହି ମଧ୍ୟ କଣା କଉଡ଼ିଟାଏ ପାଇଲି ନାହିଁ । ହେ ତୃଷ୍ଣେ ! ତୁମର ଇଚ୍ଛାହିଁ ସଫଳ ହେଉ ।

ଖଳୋଲ୍ଲାପାଃ ସୋଢ଼ାଃ କଥମପି ତଦାରାଧନପରୈ-
ର୍ନିଗୃହ୍ୟାନ୍ତର୍ବାଷ୍ପଂ ହସିତମପି ଶୂନ୍ୟେନ ମନସା ।
କୃତୋ ବିତ୍ତସ୍ତମ୍ଭପ୍ରତିହତଧିୟାମଞ୍ଜଳିରପି
ତ୍ୱମାଶେ ମୋଘାଶେ କିମପରମତୋ ନର୍ତ୍ତୟସି ମାମ୍ ॥୬॥

ଅନ୍ୱୟ—ଆଶେ (ହେ ତୃଷ୍ଣେ) ମୋଘାଶେ (ନିଷ୍ଫଳମନୋରଥେ) ଖଳୋଲ୍ଲାପାଃ (ଦୁଷ୍ଟମାନଙ୍କ କୁବାକ୍ୟ) ତଦାରାଧନପରୈଃ (ସେମାନଙ୍କ ସନ୍ତୋଷ ନିମିତ୍ତ) କଥମପି ସୋଢ଼ାଃ (କୌଣସି ମତେ ସହିଲି) ଅନ୍ତର୍ବାଷ୍ପଂ (ଅନ୍ତରର କ୍ରନ୍ଦନକୁ) ନିଗୃହ୍ୟ (ଗୁପିରଖି) ଶୂନ୍ୟେନ ଅପି ମନସା (ଶୂନ୍ୟ ମନରେ) ହସିତଂ (ହସିଲି) ବିତ୍ତସ୍ତମ୍ଭପ୍ରତିହତଧିୟାଂ (ଅତି ମୂର୍ଖଙ୍କ ଆଗରେ) ଅଞ୍ଜଳିଃ ଅପି କୃତଃ (ହାତଯୋଡ଼ି ରହିଲି) ଅତଃ ପରଂ (ଏହାପରେ) ମାଂ କିଂ ନର୍ତ୍ତୟସି (ମୋତେ ଆଉ କି ନାଚ ନଚାଇବୁ) ।

ଅର୍ଥ—ଦୁର୍ଜନମାନଙ୍କ ସେବାରେ ରହି ସେମାନଙ୍କର ଅତି ରୁକ୍ଷକଥା କୌଣସିମତେ ସହିଲି । ଅନ୍ତରରୁ ବାହାରି ଆସୁଥିବା କ୍ରନ୍ଦନକୁ ଆଖିକୋଣରେ ଅବରୁଦ୍ଧ କରି ଶୂନ୍ୟମନରେ ହସହସ ମୁହଁରେ ରହିଲି । ମିଥ୍ୟା ଐଶ୍ୱର୍ଯ୍ୟ ଅହଙ୍କାରରେ ଅନ୍ଧ, ବିବେକହୀନ ଧନୀମାନଙ୍କ ଆଗରେ ହାତଯୋଡ଼ି ଠିଆ-ହେଲି । ତଥାପି ହେ ତୃଷ୍ଣେ ! ତୁ ମୋତେ ଆଉ କିପରି ନଚାଇବାକୁ ଇଚ୍ଛା-କରୁଛୁ !

ଆଦିତ୍ୟସ୍ୟ ଗତାଗତୈରହରହଃ ସଂକ୍ଷୀୟତେ ଜୀବିତଂ
ବ୍ୟାପାରୈର୍ବହୁକାର୍ଯ୍ୟଭାରଗୁରୁଭିଃ କାଳୋ ନ ବିଜ୍ଞାୟତେ ।
ଦୃଷ୍ଟ୍ୱା ଜନ୍ମଜରାବିପତ୍ତିମରଣଂ ତ୍ରାସଶ୍ଚ ନୋତ୍ପଦ୍ୟତେ
ପୀତ୍ୱା ମୋହମୟୀଂ ପ୍ରମାଦମଦିରାମୁନ୍ମତ୍ତଭୂତଂ ଜଗତ୍ ॥୭॥

ଅନ୍ୱୟ—ଜଗତ୍ (ସଂସାର) ମୋହମୟୀଂ (ଅଜ୍ଞାନରୂପକ) ପ୍ରମାଦମଦିରାଂ (ପ୍ରମାଦରୂପକ ମଦ୍ୟ) ପୀତ୍ୱା (ପିଇ) ଉନ୍ମତ୍ତଭୂତଂ (ପାଗଳ ହୋଇଯାଇଛି) ଅହରହଃ (ପ୍ରତିଦିନ) ଆଦିତ୍ୟସ୍ୟ (ସୂର୍ଯ୍ୟଙ୍କ) ଗତାଗତୈଃ (ଯିବାଆସିବା ଦ୍ୱାରା) ଜୀବିତଂ (ଜୀବନକାଳ) ସଂକ୍ଷୀୟତେ (କ୍ଷୀଣହେଉଛି) ବହୁକାର୍ଯ୍ୟଭାର-ଗୁରୁଭିଃ (ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟଦ୍ୱାରା) ବ୍ୟାପାରୈଃ (ବିଭିନ୍ନ କାର୍ଯ୍ୟାରମ୍ଭ-ଦ୍ୱାରା) କାଳଃ ସଂକ୍ଷୀୟତେ (ସମୟ ଚାଲିଯାଉଛି) ନ ଜ୍ଞାୟତେ (ତାହା ଜାଣିପାରୁନାହିଁ) ଜନ୍ମଜରାବିପତ୍ତିମରଣଂ ଦୃଷ୍ଟ୍ୱା (ଜନ୍ମମୃତ୍ୟୁ ଜରାବ୍ୟାଧି ବିପଦକୁ ଦେଖି) ତ୍ରାସଃ ଚ ନ ଉତ୍ପଦ୍ୟତେ (ଭୟଭୀତ ମଧ୍ୟ ହେଉନାହିଁ) ।

ଅର୍ଥ—ସୂର୍ଯ୍ୟ ପ୍ରତିଦିନ ଉଦୟ ଓ ଅସ୍ତ ହୁଅନ୍ତି । ସେହିପରି ଜୀବନ କାଳକ୍ରମେ କ୍ଷୟ ହୁଏ । କିନ୍ତୁ ଜୀବନ ରକ୍ଷାପାଇଁ ନାନା କାର୍ଯ୍ୟରେ ବ୍ୟସ୍ତରହି ମଣିଷ ଆୟୁକ୍ଷୟକାରକ କାଳର କଥା ଜାଣିପାରେ ନାହିଁ । ଜନ୍ମମୃତ୍ୟୁ ଜରାବ୍ୟାଧି ରୂପକ ବିପଦକୁ ଦେଖି ମଧ୍ୟ ସେ ଭୟଭୀତ ହେଉନାହିଁ । ତେଣୁ ମୋହମଦିରା ପାନକରି ସମସ୍ତେ ଉନ୍ମତ୍ତ ହୋଇପଡ଼ିଥିବାର ମନେହୁଏ ।

ଦୀନା ଦୀନମୁଖୈ ସଦୈବ ଶିଶୁକୈରାକୃଷ୍ଟଜୀର୍ଣ୍ଣାମ୍ବରା
କ୍ରୋଶଦ୍ଭିଃ କ୍ଷୁଧିତୈର୍ନରୈର୍ନବିଧୁରା ଦୃଶ୍ୟେତ ଚେଦ୍ଗେହିନୀ ।
ଯାଚ୍ଞାଭଙ୍ଗଭୟେନ ଗଦ୍ଗଦଗଲତ୍ତ୍ରୁଟ୍ୟଦ୍ବିଲୀନାକ୍ଷରଂ
କୋ ଦେହୀତି ବଦେତ୍ ସ୍ୱଦଗ୍ଧଜଠରସ୍ୟାର୍ଥେ ମନସ୍ୱୀ ପୁମାନ୍ ॥୮॥

ଅନ୍ୱୟ—କଃ ମନସ୍ୱୀ ପୁରୁଷଃ (କେଉଁ ଧୀର ପୁରୁଷ) ସ୍ୱଜଠରସ୍ୟାର୍ଥେ (ନିଜର ପେଟ ପୂରାଇବା ପାଇଁ) ଯାଚଞାଭଙ୍ଗଭୟେନ (ମାଗିଲେ ଦେବ କି ନାହିଁ ଭୟରେ) ଗଦ୍ଗଦଗଲତ୍ତ୍ରୁଟ୍ୟଦ୍ବିଲୀନାକ୍ଷରଂ (ଭଙ୍ଗା କଣ୍ଠରେ) ଦେହି

ଇତ ବଦେତ୍ (ମୋତେ ଦଅ ବୋଲି କହିବ ?) ଚେତ୍ (ଯଦି) ସଦା ଏବ (ସବୁବେଳେ) ଦୀନମୁଖୈଃ (ଶୁଖିଲା ମୁହଁ) ଶିଶୁକୈଃ (ବାଳକଦ୍ୱାରା) ଆକୃଷ୍ଟ-ଜୀର୍ଣ୍ଣାମ୍ବରା (ଟାଣୁଥିବା ଛିଣ୍ଡା ଶାଢ଼ି ପରିହିତା) ଦୀନା (ଦୟାର ପାତ୍ରୀ) କ୍ରୋଶିଦ୍ଭିଃ କ୍ଷୁଧାର୍ତ୍ତୈଃ ନରୈଃ (କାନ୍ଦୁଥିବା କ୍ଷୁଧାର୍ତ୍ତ ଲୋକଙ୍କଦ୍ୱାରା) ବିଧୁରା (ବ୍ୟାକୁଳା) ଗେହିନୀ (ଗୃହିଣୀ) ନ ଦୃଶ୍ୟେତ (ଦେଖାଯାଉ ନଥିବ) ।

ଅର୍ଥ—ଅତି ଦୀନହୀନ ଶୁଷ୍କମୁଖ ବାଳ ଯେଉଁ ସ୍ତ୍ରୀର ଛିଡ଼ା ଲୁଗା କାନିକୁ ଟାଣୁଥିବେ ଏବଂ ଖାଇବା ପାଇଁ କାନ୍ଦୁଥିବା ଗୃହର ଅନ୍ୟ ଲୋକଙ୍କ ଦୁଃଖରେ ଦୁଃଖିତା ଗୃହିଣୀ ଯାହାର ନଥିବ, ସେପରି କେଉଁ ଧୀର ପୁରୁଷ କେବଳ ନିଜର ଉଦର ପୂରଣ ପାଇଁ ମାଗିଲେ ଦେବ କି ନାହିଁ ଏହି ଭୟରେ ଗଦ୍‌ଗଦ ହୋଇ ଭଙ୍ଗାକଣ୍ଠରେ 'ଦଅ' ବୋଲି କହିବ ?

ନିବୃତ୍ତା ଭୋଗେଚ୍ଛା ପୁରୁଷବହୁମାନୋ ବିଗଳିତଃ
ସମାନାଃ ସ୍ୱର୍ଯାତାଃ ସପଦି ସୁହୃଦୋ ଜୀବିତସମାଃ ।
ଶନୈର୍ଯଷ୍ଟ୍ୟୁତ୍ଥାନଂ ଘନତିମିରରୁଦ୍ଧେ ଚ ନୟନେ
ଅହୋ ଧୃଷ୍ଟଃ କାୟସ୍ତଦପି ମରଣାପାୟଚକିତଃ ॥୯॥

ଅନ୍ୱୟ—ଭୋଗେଚ୍ଛା (ଭୋଗବିଳାସ ଇଚ୍ଛା) ନିବୃତ୍ତା (ଶାନ୍ତ ହୋଇଛି) ପୁରୁଷବହୁମାନଃ (ପୁରୁଷୋଚିତ ଅହଙ୍କାର) ବିଗଳିତଃ (ନାହିଁ) ସପଦି (ଅଧୁନା) ସମାନାଃ (ସମକାଳୀନ ଲୋକେ) ଜୀବିତସମାଃ (ପ୍ରାଣପ୍ରିୟ) ସୁହୃଦଃ (ବନ୍ଧୁମାନେ ମଧ୍ୟ) ସ୍ୱର୍ଯାତାଃ (ମଲେଣି) ଶନୈଃ (ଧୀରେ ଧୀରେ) ଯଷ୍ଟ୍ୟୁ-ତ୍ଥାନଂ (ବାଡ଼ିଧରି ଚାଲୁଛି) ନୟନେ ଚ (ଆଖି ଦୁଇଟି ମଧ୍ୟ) ଘନତିମିର-ରୁଦ୍ଧେ (ଗାଢ଼ ଅନ୍ଧକାରରେ ଆଚ୍ଛାଦିତ) ଅହୋ (ଆଶ୍ଚର୍ଯ୍ୟ) ଧୃଷ୍ଟଃ କାୟଃ (ନିର୍ଲଜ୍ଜ ଦେହ) ତତ୍ ଅପି (ତଥାପି) ମରଣୋପାୟଚକିତଃ (ମୃତ୍ୟୁଭୟରେ ଭୀତତ୍ରସ୍ତ ହେଉଛି) ।

ଅର୍ଥ—ବିଷୟଭୋଗର ଆକାଙ୍‌କ୍ଷାରୁ ନିବୃତ୍ତ ହୋଇଛି । ପୌରୁଷର ଅଭିମାନ ନଷ୍ଟ ହୋଇସାରିଛି । ପ୍ରାଣପ୍ରିୟ ବନ୍ଧୁ ଓ ସମବୟସ୍କମାନେ ମୃତ୍ୟୁ-

ବରଣ କଲେଣି । ବାଡ଼ି ଧରି ଧୀରେ ଧୀରେ ଚାଲୁଛୁ । ଅନ୍ଧାରକଣା ବେଗରେ ଆଖିର ଦୃଷ୍ଟି ଶକ୍ତି ଲୋପପାଇଛୁ । ହାୟ, ତଥାପି ଜ୍ଞାନହୀନ ଏହି ଦେହ ମୃତ୍ୟୁ-ଭୟରେ ଚକିତହୃତ ହେଉଛୁ ।

ହିଂସାଶୂନ୍ୟମୟତ୍ନଲବ୍‌ଧମଶନଂ ଧାତ୍ରା ମରୁତ୍‌କଳ୍ପିତଂ
ବ୍ୟାଳାନାଂ ପଶବସ୍ତୃଣାଙ୍କୁରଭୁଜଃ ସୃଷ୍ଟାଃ ସ୍ଥଳୀଶାୟିନଃ ।
ସଂସାରାର୍ଣ୍ଣବଲଙ୍ଘନକ୍ଷମଧିୟାଂ ବୃତ୍ତିଃ କୃତା ସା ନୃଣାଂ
ଯାମନ୍ୱେଷୟତାଂ ପ୍ରୟାନ୍ତି ସତତଂ ସର୍ବେ ସମାପ୍ତିଂ ଗୁଣାଃ ॥୧୦॥

ଅନ୍ୱୟ—ଧାତ୍ରା (ବିଧାତାଦ୍ୱାରା) ବ୍ୟାଲାନାଂ (ସର୍ପମାନଙ୍କ ପାଇଁ) ହିଂସା-ଶୂନ୍ୟମୟତ୍ନଲବ୍‌ଧମଶନଂ (ହିଂସାରହିତ ଭୋଜନ) ମରୁତ୍ (ବାୟୁ) କଳ୍ପିତଂ (କଳ୍ପିତ ହୋଇଛି) ସ୍ଥଳୀଶାୟିନଃ (ମାଟିରେ ଶୋଇବା) ତୃଣାଙ୍କୁରଭୁଜଃ (ଘାସ ଖାଉଥିବା) ପଶବଃ (ପଶୁଗୁଡ଼ିକ) ସୃଷ୍ଟାଃ (ସୃଷ୍ଟି ହୋଇଛନ୍ତି) ସଂସାର-ର୍ଣ୍ଣବଲଙ୍ଘନକ୍ଷମଧିୟାଂ (ସଂସାରସାଗରକୁ ପାର ହେବାରେ ସମର୍ଥ) ନୃଣାଂ (ଲୋକମାନଙ୍କର) ସା ବୃତ୍ତିଃ (ସେହି ଜୀବିକା) କୃତା (କରିଛନ୍ତି) ଯାମ୍ ଅନ୍ୱେଷୟତାଂ (ଯାହାକୁ ଖୋଜିବା ପାଇଁ) ସର୍ବେ ଗୁଣାଃ (ସମସ୍ତ ସୁଗୁଣ) ସତତଂ ସମାପ୍ତିଂ (ପୂରାପୂରି ବିନାଶ) ପ୍ରୟାନ୍ତି (ପ୍ରାପ୍ତ ହୁଅନ୍ତି) ।

ଅର୍ଥ—ବ୍ରହ୍ମା ସର୍ପପାଇଁ ହିଂସାରହିତ ଅନାୟାସଲଭ୍ୟ ପବନ ସୃଷ୍ଟି କରିଛନ୍ତି । ଭୂତଳ ଶଯ୍ୟାରେ ଶୟନ କରୁଥିବା ପଶୁମାନଙ୍କ ପାଇଁ ତୃଣ ବ୍ୟବସ୍ଥା କରିଛନ୍ତି । ସଂସାରସାଗର ଲଙ୍ଘନ କରିବା ପାଇଁ ସମର୍ଥ ମଣିଷ ପାଇଁ ମଧ୍ୟ ବିଧାତା ଅନୁରୂପ ଜୀବିକାର ବ୍ୟବସ୍ଥା କରିଛନ୍ତି, ଯେଉଁ ଜୀବିକା ଅନୁସରଣ କରିବାରେହିଁ ବ୍ୟକ୍ତିର ସମସ୍ତ ସଦ୍‌ଗୁଣ ନଷ୍ଟ ହୋଇଯାଉଛି ।

ନ ଧ୍ୟାତଂ ପଦମୀଶ୍ୱରସ୍ୟ ବିଧିବତ୍ସଂସାରବିଚ୍ଛିତ୍ତୟେ
ସ୍ୱର୍ଗଦ୍ୱାରକପାଟପାଟନପଟୁର୍ଧର୍ମୋଽପି ନୋପାର୍ଜିତଃ ।
ନାରୀପୀନପୟୋଧରୋରୁଯୁଗଳଂ ସ୍ୱପ୍ନେଽପି ନାଲିଙ୍ଗିତଂ
ମାତୁଃ କେବଳମେବ ଯୌବନବନଚ୍ଛେଦେ କୁଠାରା ବୟମ୍ ॥୧୧॥

ଅନ୍ୱୟ—ସଂସାରବିଚ୍ଛିତ୍ତୟେ (ସଂସାରରୁ ମୁକ୍ତ ପାଇବା ପାଇଁ) ବିଧିବତ୍ (ଯଥାବିଧି) ଈଶ୍ୱରସ୍ୟ (ପରମେଶ୍ୱରଙ୍କ) ପଦଂ (ଚରଣକୁ) ନ ଧ୍ୟାତଂ (ସ୍ମରଣ କଲୁନାହିଁ) ସ୍ୱର୍ଗଦ୍ୱାରକପାଟପାଟନପଟୁଃ (ସ୍ୱର୍ଗର ଦ୍ୱାର ଉନ୍ମୋଚନରେ ସମର୍ଥ) ଧର୍ମଃ ଅପି (ଧର୍ମଃ ମଧ୍ୟ) ନ ଉପାର୍ଜିତଃ (ଅର୍ଜନ କଲୁନାହିଁ) ସ୍ୱପ୍ନେ ଅପି (ସ୍ୱପ୍ନରେ ମଧ୍ୟ) ନାରୀପୀନପୟୋଧରୋରୁଯୁଗଳଂ (ରମଣୀର ପୀନ ପୟୋଧର ଓ ଉରୁ) ନ ଆଲିଙ୍ଗିତଃ (ଆଲିଙ୍ଗନ କଲୁନାହିଁ) ବୟଂ (ଆମେ) ମାତୁଃ (ମା'ଙ୍କର) ଯୌବନବନଚ୍ଛେଦ (ଯୌବନ ବନ ବିନାଶରେ) କେବଳଂ କୁଠାରଃ ଏବ (କେବଳ କୁରାଢ଼ି ହେଲୁ)।

ଅର୍ଥ—ସଂସାର ବନ୍ଧନରୁ ମୁକ୍ତି ପାଇବା ନିମିତ୍ତ ପରମେଶ୍ୱରଙ୍କ ଚରଣ-କମଳରେ ଯଥାବିଧି ଧ୍ୟାନକଲୁ ନାହିଁ କି ସ୍ୱର୍ଗଲାଭ ପାଇଁ ଯଜ୍ଞାଦି ଅନୁଷ୍ଠାନ-ଦ୍ୱାରା ଧର୍ମ ଅର୍ଜନ କଲୁନାହିଁ। ସ୍ୱପ୍ନରେ ବି ରମଣୀର ସ୍ନେହ, ଆଲିଙ୍ଗନାଦି ସୁଖ ପାଇଲୁ ନାହିଁ। ଜନନୀର ଯୌବନ ନଷ୍ଟ କରିବାରେ କେବଳ କୁଠାର ହୋଇ ବୃଥା ଜନ୍ମ ଗ୍ରହଣ କଲୁ।

ଭୋଗା ନ ଭୁକ୍ତା ବୟମେବ ଭୁକ୍ତାସ୍ତପୋ
ନ ତପ୍ତଂ ବୟମେବ ତପ୍ତାଃ।
କାଳୋ ନ ଯାତୋ ବୟମେବ ଯାତାସ୍ତୃଷ୍ଣା
ନ ଜୀର୍ଣ୍ଣା ବୟମେବ ଜୀର୍ଣ୍ଣାଃ ॥୧୨॥

ଅନ୍ୱୟ—ଭୋଗାଃ (ବିଷୟାଦି ସୁଖ) ନ ଭୁକ୍ତାଃ (ଭୋଗକରିନାହୁଁ) ବୟମ୍ ଏବ (ଆମ୍ଭେମାନେ ନିର୍ଦ୍ଧିତଭାବେ) ଭୁକ୍ତାଃ (ସେହି ବିଷୟବାସନା ଦ୍ୱାରା ପରାଭୂତ ହୋଇଛୁ) ତପଃ ନ ତପ୍ତଂ (ସ୍ୱଧର୍ମ ପାଳନ କରିନାହୁଁ) ବୟମ୍ ଏବ ତପ୍ତାଃ (ଆମ୍ଭେମାନେ ଅଧର୍ମ ଆଚରଣ ଦ୍ୱାରା ଦୁଃଖରେ ଦଗ୍ଧ ହୋଇଛୁ) କାଳଃ ନ ଯାତଃ (କାଳ ଅତିବାହିତ ହୋଇଯାଇ ନାହିଁ) ବୟମ୍ ଏବ ଯାତାଃ (ଯଥାସମୟରେ ଆମେ ଆମର କର୍ତ୍ତବ୍ୟ କଲୁନାହିଁ) ତୃଷ୍ଣା ନ ଜୀର୍ଣ୍ଣ (ଆକାଙ୍‌କ୍ଷାର ବିନାଶ ଘଟିଲା ନାହିଁ) ବୟମ୍ ଏବ ଜୀର୍ଣ୍ଣାଃ (ବୃଥା ଆକାଙ୍‌କ୍ଷାରେ ଆମେହିଁ ଜୀର୍ଣ୍ଣଶୀର୍ଣ୍ଣ ହୋଇଗଲୁ)।

ଅର୍ଥ—ଆମେ ବିଷୟଭୋଗ କରିନାହୁଁ କିନ୍ତୁ ବିଷୟବାସନା ଆମକୁ ସର୍ବଦା ପରାଭୂତ କରିଛି । ଆମେ ଧର୍ମାଚରଣ କରିନାହୁଁ, ତେଣୁ ଅଧର୍ମ ଓ ଅକର୍ମହିଁ ଆମକୁ ସନ୍ତପ୍ତ କରିଛି । କାଳ ଅତିବାହିତ ହୋଇଯାଇନାହିଁ ବରଂ ଯଥାସମୟରେ କର୍ତ୍ତବ୍ୟ ପାଳନ ନକରିବାରେ ହିଁ ଆମର ବୟସ ଅତୀତ ହୋଇଛି । ଆମର ତୃଷ୍ଣା କେବେହେଲେ ପୁରୁଣା ହେଲା ନାହିଁ, କିନ୍ତୁ ଆମେ ଜୀର୍ଣ୍ଣଶୀର୍ଣ୍ଣ ହୋଇଗଲୁ ।

କ୍ଷାନ୍ତଂ ନ କ୍ଷମୟା ଗୃହୋଚିତସୁଖଂ ତ୍ୟକ୍ତଂ ନ ସନ୍ତୋଷତଃ
ସୋଢ଼ା ଦୁଃସହଶୀତବାତତପନକ୍ଲେଶା ନ ତପ୍ତଂ ତପଃ ।
ଧ୍ୟାତଂ ବିତ୍ତମହର୍ନିଶଂ ନିୟମିତପ୍ରାଣୈର୍ନ ଶମ୍ଭୋଃ ପଦଂ
ତତ୍ତତ୍କର୍ମ କୃତଂ ଯଦେବ ମୁନିଭିସ୍ତୈସ୍ତୈଃ ଫଳୈର୍ବଞ୍ଚିତାଃ ॥୧୩॥

ଅନ୍ୱୟ—କ୍ଷମୟା (କ୍ଷମାଗୁଣ ଦ୍ୱାରା) ନ କ୍ଷାନ୍ତଂ (କାହାକୁ କ୍ଷମା ଦେଇନି) ସନ୍ତୋଷତଃ (ସନ୍ତୁଷ୍ଟ ହୋଇ) ଗୃହୋଚିତସୁଖଂ (ସଂସାର ସୁଖ) ନ ତ୍ୟକ୍ତଂ (ତ୍ୟାଗ କରିନି) ଦୁଃସହଶୀତବାତତପନକ୍ଲେଶାଃ (ଦୁଃସହ ଖରା, କାକର କଷ୍ଟ) ସୋଢ଼ାଃ (ସହ୍ୟ କଲି) ତପଃ ନ ତପ୍ତଂ (କିନ୍ତୁ ତପସ୍ୟା କରିନାହୁଁ) ଅହର୍ନିଶଂ (ଦିନରାତି) ବିତ୍ତଂ (ଧନସମ୍ପଦ କଥା) ଧ୍ୟାତଂ (ଭାବିଲି) ନିୟମିତପ୍ରାଣୈଃ (ପ୍ରାଣାୟାମାଦି ଦ୍ୱାରା) ଶମ୍ଭୋଃ ପଦଂ ନ (ଶମ୍ଭୁଙ୍କ ପଦାରବିନ୍ଦ ଧ୍ୟାନ କଲିନାହୁଁ) ମୁନିଭିଃ (ମୁନିମାନଙ୍କଦ୍ୱାରା) ଯତ୍ ଏବ କର୍ମ କୃତଂ (ଯେଉଁ ଯେଉଁ କର୍ମ କରାଯାଏ) ତତ୍ତତ୍ (ସେ ସମସ୍ତ କର୍ମକଲି) ତୈଃ ତୈଃ (ସେହିସବୁ) ଫଳୈଃ (ଫଳ ପାଇବାରୁ) ବଂଚିତାଃ (ବଂଚିତ ହେଲି) ।

ଅର୍ଥ—ନିଜ କ୍ଷମାଗୁଣରେ କାହାକୁ କ୍ଷମା କଲିନାହୁଁ । ସଂସାରର ସୁଖ-ଭୋଗକୁ ସନ୍ତୋଷ ହୋଇ ତ୍ୟାଗ କରିନାହୁଁ । ଦୁଃସହ ଶୀତ ଓ ଆତପ କଷ୍ଟ ସହିଲି; କିନ୍ତୁ ତପସ୍ୟା ଆଚରଣ କଲିନାହୁଁ । ଦିନରାତି ଅର୍ଥଚିନ୍ତା କଲି; କିନ୍ତୁ ପ୍ରାଣାୟାମାଦି ଶିବଙ୍କ ଚରଣ ଧ୍ୟାନ କଲିନାହୁଁ । ମୁନିମାନେ ଯାହା ଯାହା କରନ୍ତି ସେ ସମସ୍ତ କଲି; କିନ୍ତୁ ଅଯଥା ଆଚରଣ ହେତୁ ଉପଯୁକ୍ତ ଫଳ-ଲାଭରୁ ବଂଚିତ ହେଲି ।

ବଳିଭିର୍ମୁଖମାକ୍ରାନ୍ତଂ ପଳିତୈରଙ୍କିତଂ ଶିରଃ ।
ଗାତ୍ରାଣି ଶିଥିଳାୟନ୍ତେ ତୃଷ୍ଣୈକା ତରୁଣାୟତେ ॥୧୪॥

ଅନ୍ୱୟ—ବଳିଭିଃ (ମାଂସପେଶୀର ରେଖାଦ୍ୱାରା) ମୁଖମ୍ ଆକ୍ରାନ୍ତଂ (ମୁହଁ ଆକ୍ରାନ୍ତ ଅର୍ଥାତ୍ ରେଖାଂକିତ) ପଳିତୈଃ (ପକ୍ୱକେଶ ଦ୍ୱାରା) ଶିରଃ ଅଂକିତମ୍ (ମସ୍ତକ ମଣ୍ଡିତ, ଚହ୍ନିତ) ଗାତ୍ରାଣି (ଅଙ୍ଗପ୍ରତ୍ୟଙ୍ଗ) ଶିଥିଳାୟନ୍ତେ (ଶିଥିଳ ହୋଇପଡ଼ୁଛନ୍ତି) ଏକା ତୃଷ୍ଣା (ଏକମାତ୍ର ତୃଷ୍ଣା) ତରୁଣାୟତେ (ଅଧିକରୁ ଅଧିକ ବଢ଼ୁଛି) ।

ଅର୍ଥ—ବାର୍ଦ୍ଧକ୍ୟ ହେତୁ ମୁଖର ଚର୍ମ କୁଞ୍ଚିତ ହୋଇଗଲାଣି, ମସ୍ତକ ପକ୍ୱ କେଶରେ ଚହ୍ନିତ ହେଲାଣି ଓ ସର୍ବାଙ୍ଗ ଶିଥିଳ ହୋଇଗଲାଣି । ତଥାପି ନିତ୍ୟ ନୂତନ ବିଷୟଭୋଗର ତୃଷ୍ଣାହିଁ କେବଳ ଉତ୍ତରୋତ୍ତର ବୃଦ୍ଧିଲାଭ କରୁଛି ।

ଯେନୈବାମ୍ବର ଖଣ୍ଡେନ ସଂଖାତୋ ନିଶି ଚଂଦ୍ରମାଃ ।
ତେନୈବ ଚ ଦିବା ଭାନୁଃ ପଶ୍ୟ ଦୌର୍ଗତ୍ୟମେତୟୋଃ ॥୧୫॥

ଅନ୍ୱୟ—ଯେନ ଏବ ଅମ୍ବରଖଣ୍ଡେନ (ଯେଉଁ ଆକାଶକୁ) ନିଶି (ରାତିରେ) ଚଂଦ୍ରମାଃ ସଂଖାତଃ (ଚଂଦ୍ର ଆବୃତ କରନ୍ତି) ତେନ ଏବ ଦିବା (ସେହି ଆକାଶକୁ ଦିନରେ) ଭାନୁଃ ସମ୍ବୃତଃ (ସୂର୍ଯ୍ୟ ଆବୃତ କରନ୍ତି) ଏତୟୋଃ (ଚଂଦ୍ର ଓ ସୂର୍ଯ୍ୟଙ୍କର) ଦୌର୍ଗତ୍ୟଂ ପଶ୍ୟ (ଦୁର୍ଗତିକୁ ଦେଖ) ।

ଅର୍ଥ—ରାତିରେ ଚଂଦ୍ର ଯେଉଁ ଆକାଶ ଖଣ୍ଡକୁ ଘୋଡ଼େଇ ହୋଇ ରହନ୍ତି, ଦିନରେ ସୂର୍ଯ୍ୟ ସେହି ଆକାଶକୁ ଘୋଡ଼େଇ ହୋଇ ସମସ୍ତ ଅତିବାହିତ କରନ୍ତି । (ଚଂଦ୍ର ଓ ସୂର୍ଯ୍ୟଙ୍କ ପରି ମହାଗ୍ରହଙ୍କର ଏହି ଦୁର୍ଦ୍ଦଶା ଦେଖି ଜନେ ଯାହା ପାଇଛନ୍ତି ସେଥିରେ ସନ୍ତୁଷ୍ଟ ରହିବା ଉଚିତ ।

ଅବଶ୍ୟଂ ଯାତାରଶ୍ଚିରତରମୁଷିତ୍ୱାପି ବିଷୟା
ବିୟୋଗେ କୋ ଭେଦସ୍ତ୍ୟଜତି ନ ଜନୋ ଯତ୍ସ୍ୱୟମମୂନ୍ ।

ବ୍ରଜନ୍ତଃ ସ୍ୱାତନ୍ତ୍ର୍ୟାଦତୁଳପରିତାପାୟ ମନସଃ
ସ୍ୱୟଂ ତ୍ୟକ୍ତା ହ୍ୟେତେ ଶମସୁଖମନନ୍ତଂ ବିଦଧତେ ॥୧୬॥

ଅନ୍ୱୟ—ବିଷୟାଃ (ଧନସମ୍ପଦ) ଚିରତରଂ (ବହୁକାଳ) ଉଷିତ୍ୱା ଅପି (ରହି ମଧ୍ୟ) ଅବଶ୍ୟଂ ଯାତାରଃ (ନିଶ୍ଚୟ ଦିନେ ବିନାଶ ପ୍ରାପ୍ତ ହେବ) ବିୟୋଗେ (ବିଷୟ ସ୍ୱତଃ ନଷ୍ଟ ହୋଇଯିବାରେ ଅଥବା ତ୍ୟାଗ କରିବାରେ) କଃ ଭେଦଃ (ପାର୍ଥକ୍ୟ କଣ) ଜନଃ (ଲୋକ) ସ୍ୱୟଂ (ନିଜେ) ଅମୂନ୍ ଯତ୍ (ସେହି ବିଷୟକୁ) ନ ତ୍ୟଜତି (ତ୍ୟାଗ କରୁନାହିଁ) ସ୍ୱାତନ୍ତ୍ର୍ୟାତ୍ (ସ୍ୱେଚ୍ଛାରେ) ବ୍ରଜନ୍ତଃ (ଚାଲିଯାଉଥିବା) ମନସଃ (ମନର) ଅତୁଳ ପରିତାପାୟ (ଅସୀମ ଦୁଃଖର କାରଣ) ହି (ନିଶ୍ଚୟ) ଏତେ (ବିଷୟ) ସ୍ୱୟଂ ତ୍ୟକ୍ତା (ନିଜେ ତ୍ୟାଗ-କଲେ) ଅନନ୍ତଂ (ଅସୀମ) ଶମସୁଖଂ (ଶାନ୍ତ ଓ ସୁଖ) ବିଦଧତେ (ପ୍ରଦାନ କରେ) ।

ଅର୍ଥ—ବହୁକାଳ ପର୍ଯ୍ୟନ୍ତ ଆନନ୍ଦ ଦେଉଥିବା ବିଷୟଭୋଗାଦି ଦିନେ ନା ଦିନେ ନଷ୍ଟ ହୋଇଯିବ । ବିଷୟ ଆପେ ଆପେ ଉଭେଇ ଯିବାରେ ଯଦି ସନ୍ଦେହ ନାହିଁ, ତେବେ ମଣିଷ ସ୍ୱତଃପ୍ରବୃତ୍ତ ହୋଇ ତାହା ତ୍ୟାଗ କରିବା ଉଚିତ । କାରଣ, ବିଷୟ ନଷ୍ଟ ହୋଇଗଲେ ମନରେ ଅସୀମ ଦୁଃଖ ଜାତହେବ । ତେଣୁ ସ୍ୱତଃପ୍ରବୃତ୍ତ ହୋଇ ନିଜେ ତାହା କରିପାରିଲେ ଅଶେଷ ସୁଖ ଓ ଶାନ୍ତ ମିଳିବ ।

କୃଶଃ କାଣଃ ଖଞ୍ଜଃ ଶ୍ରବଣରହିତଃ ପୁଚ୍ଛବିକଳୋ
ବ୍ରଣୀ ପୂୟକ୍ଲିନ୍ନଃ କୃମିକୁଳଶତୈରାବୃତତନୁଃ ।
କ୍ଷୁଧାକ୍ଷାମୋ ଜୀର୍ଣ୍ଣଃ ପିଠରକକପାଳାର୍ପିତଗଳଃ
ଶୁନୀମନ୍ୱେତି ଶ୍ୱା ହତମପି ଚ ହନ୍ତ୍ୟେବ ମଦନଃ ॥୧୭॥

ଅନ୍ୱୟ—ଏଷଃ ମଦନ (ଏହି କନ୍ଦର୍ପ) ହତମ୍ ଅପି (ମୃତପ୍ରାୟ ପ୍ରାଣୀକୁ ମଧ୍ୟ) ହନ୍ତି ଏବ (ଦୁଃଖ ଦେଉଛି) କୃଶଃ (ଦୁର୍ବଳ) କାଣଃ (କଣା) ଖଞ୍ଜଃ (ଚ୍ଛୋଟା) ଶ୍ରବଣରହିତଃ (ଛିନ୍ନକର୍ଣ୍ଣ) ପୁଚ୍ଛବିକଳଃ (ଛିନ୍ନ ଲାଂଗୁଳ) ବ୍ରଣୀ

(ବ୍ରଣଯୁକ୍ତ) ପୂୟକ୍ଲିନ୍ନଃ (ପୂଜବଲବଲ) କୃମିକୁଳଶତୈଃ [ଶତଶତ କୃମି (ପୋକ) ଦ୍ୱାରା] ଆବୃତତନୁଃ (ବ୍ୟାପ୍ତ ଶରୀର) କ୍ଷୁଧାକ୍ଷାମଃ (କ୍ଷୁଧାରେ ଦୁର୍ବଳ) ଜୀର୍ଣ୍ଣଃ (ବୃଦ୍ଧ) ପିଠରକକପାଳାର୍ପିତଗଳଃ (ବେକରେ ଭଙ୍ଗାହାଣ୍ଡି ପିନ୍ଧିଥିବା) ଶ୍ୱା (କୁକୁର) ଶୁନୀମ୍ (କୁକୁରୀକୁ) ଅନ୍ୱେତି (ଅନୁଗମନ କରୁଛି କାମାତୁର ହୋଇ) ।

ଅନୁବାଦ—ଦୁର୍ବଳ, କଣା, ଖ୍ୱେଞ୍ଚା, କାନ ଓ ଲାଂଗୁଳ ହୀନ, ଘାଘାଉଡ଼, ପୂଜ ବଲବଲ ଦେହରେ ପୋକ ସାଲୁବାଲୁ ହେଉଥିବା ବୁଢ଼ା କୁକୁର ବେକରେ ଭଙ୍ଗା ହାଣ୍ଡିର ମାଳ ପିନ୍ଧି କାମାତୁର ହୋଇ ବୁଢ଼ୀ କୁତୀକୁ ରମଣ କରୁଛି । ଏହିପରି ମୃତ ପ୍ରାୟ ଜୀବକୁ ମଧ୍ୟ କନ୍ଦର୍ପ ପୁଣି ମାରୁଛି । ତେବେ ହୃଷ୍ଟପୁଷ୍ଟ ଶରୀରଧାରୀ କାମକବଳରୁ କିପରି ମୁକ୍ତ ହେବେ ?

ଭିକ୍ଷାଶନଂ ତଦପି ନୀରସମେକବାରଂ
ଶଯ୍ୟା ଚ ଭୂଃ ପରିଜନୋ ନିଜଦେହମାତ୍ରମ୍ ।
ବସ୍ତ୍ରଂ ବିଶୀର୍ଣ୍ଣଶତଖଣ୍ଡମୟୀ ଚ କନ୍ଥା
ହା ହା ତଥାପି ବିଷୟା ନ ପରିତ୍ୟଜନ୍ତି ॥୧୮॥

ଅନ୍ୱୟ—ଭିକ୍ଷାଶନଂ (ମାଗିଆଣିଥିବା ଅନ୍ନ) ନୀରସଂ (ଶୁଷ୍କ) ତତ୍ ଅପି (ତାହା ମଧ୍ୟ) ଏକବାରଂ (ଥରେ ମାତ୍ର) ଭୂଃ (ପୃଥିବୀ) ଶଯ୍ୟା (ଶେଯ) ନିଜ ଦେହ ମାତ୍ରଂ (ନିଜ ଦେହହିଁ) ପରିଜନଃ ଚ (ପରିବାର) ବସ୍ତ୍ରଂ (ବସନ) ବିଶୀର୍ଣ୍ଣଶତଖଣ୍ଡମୟୀ ଚ କନ୍ଥା (ଜୀର୍ଣ୍ଣ ଓ ଶତଛିନ୍ନ କନାକୁ ସିଲେଇ କରି ପ୍ରସ୍ତୁତ ହୋଇଥିବା କନ୍ଥା) ହା ହା (ହାୟ ହାୟ) ତଥାପି ବିଷୟାଃ (ତଥାପି ବିଷୟ ଆସକ୍ତି) ନ ପରିତ୍ୟଜନ୍ତି (ଲୋକକୁ ତ୍ୟାଗ କରିପାରୁନାହିଁ) ।

ଅର୍ଥ—କେବଳ ଭିକ୍ଷାନ୍ନରେ ବଞ୍ଚୁଛି । ତାହା ମଧ୍ୟ ଶୁଷ୍କ, ରସହୀନ ଓ ଦିନକୁ ଥରେ ମାତ୍ର ମିଳୁଛି । ଭୂପୃଷ୍ଠ ହେଉଛି ଶେଯ, ନିଜର ଦେହହିଁ ଏକମାତ୍ର ପରିବାର । ଶତଛିନ୍ନ ବସ୍ତ୍ରରେ ନିର୍ମିତ କନ୍ଥାହିଁ ଏକମାତ୍ର ପରିଧେୟ । ହାୟ, ତଥାପି ବିଷୟବାସନା ମୋତେ ପରିତ୍ୟାଗ କରୁନାହିଁ !

ସ୍ତନୌ ମାଂସଗ୍ରନ୍ଥୀ କନକକଳସାବିତ୍ୟୁପମିତୌ
ମୁଖଂ ଶ୍ଳେଷ୍ମାଗାରଂ ତଦପି ଚ ଶଶାଙ୍କେନ ତୁଳିତମ୍ ।
ସ୍ରବନ୍ମୂତ୍ରକ୍ଳିନ୍ନଂ କରିବରକରସ୍ପର୍ଦ୍ଧି ଜଘନଂ
ମୁହୁର୍ନିନ୍ଦ୍ୟଂ ରୂପଂ କବିଜନବିଶେଷୈର୍ଗୁରୁ କୃତମ୍ ॥୧୯॥

ଅନ୍ୱୟ—କବିଜନବିଶେଷୈଃ (ଶ୍ରେଷ୍ଠ କବିମାନଙ୍କ ଦ୍ୱାରା) ମାଂସଗ୍ରନ୍ଥୀ (ମାଂସପିଣ୍ଡ) ସ୍ତନୌ (କୁଚଦ୍ୱୟ) କନକକଲଶୌ ଇତି (ସୁବର୍ଣ୍ଣକଳସ ବୋଲି) ଉପମିତୌ (ତୁଳନା କରାଯାଇଛି) ମୁଖଂ ଶ୍ଳେଷ୍ମାଗାରଂ (କଫଲାଳାଦିର ଆଧାର ମୁଖ) ତତ୍ ଅପି (ତାହା ମଧ୍ୟ) ଶଶାଙ୍କେନ ତୁଳିତଂ (ଚନ୍ଦ୍ର ସହିତ ତୁଳିତ ହୋଇଛି) ସ୍ରବନ୍ମୂତ୍ରକ୍ଳିନ୍ନଂ (ମୂତ୍ରାଦି ସ୍ରାବଦ୍ୱାରା ଆର୍ଦ୍ର) ଜଘନଂ କରିବରସ୍ପର୍ଦ୍ଧି (ଜଘନକୁ ହସ୍ତୀଶୁଣ୍ଢ ତୁଲ୍ୟ) ମୁହୁଃ ନିନ୍ଦ୍ୟଂ ରୂପଂ (ବାରମ୍ବାର ନିନ୍ଦାଯୋଗ୍ୟ ରୂପକୁ) ଗୁରୁକୃତମ୍ (ଶ୍ରେଷ୍ଠ ବୋଲି ବର୍ଣ୍ଣିତ ହୋଇଛି) ।

ଅର୍ଥ—ରମଣୀମାନଙ୍କର ମାଂସଳ ସ୍ତନ ଯୁଗଳକୁ ସୁବର୍ଣ୍ଣ କଳସରୂପେ, ଶ୍ଳେଷ୍ମାଦିର ଆଧାର ମୁଖକୁ ଚନ୍ଦ୍ର ରୂପେ, ମୂତ୍ରାଦି ସ୍ରାବଦ୍ୱାରା ଅତି ଅପବିତ୍ର ଜଘନକୁ ହସ୍ତୀର ଶୁଣ୍ଢ ସହିତ ତୁଳନା କରି ଶ୍ରେଷ୍ଠ କବିମାନେ ତା'ର ନିନ୍ଦନୀୟ ରୂପକୁ ଗୌରବାନ୍ୱିତ କରିଛନ୍ତି ।

ଫଳମଳମଶନାୟ ସ୍ୱାଦୁ ପାନାୟ ତୋୟଂ
ଶୟନମବନିପୃଷ୍ଠଂ ବଲ୍କଲେ ବାସସୀ ତୁ ।
ନବଧନମଧୁପାନ ଭ୍ରାନ୍ତସର୍ବେନ୍ଦ୍ରିୟାଣା-
ମବିନୟମନୁମନ୍ତୁଂ ନୋତ୍ସହେ ଦୁର୍ଜନାନାମ୍ ॥୨୦॥

ଅନ୍ୱୟ—ନବଧନମଧୁ-ସର୍ବେନ୍ଦ୍ରିୟାଣାଂ (ନବୀନଧନ ପ୍ରାପ୍ତି ରୂପକ ମଦିରାପାନରେ ମତ୍ତ) ଦୁର୍ଜନାନାଂ (ଦୁଷ୍ଟମାନଙ୍କ) ଅବିନୟଂ (କୁବାକ୍ୟ, ଅବିଚାରକୁ) ଅନୁମନ୍ତୁଂ (ସହିବାକୁ) ନ ଉତ୍ସହେ (ସମର୍ଥ ନୁହେଁ) ଯତଃ ଅଶନାୟ (ଭୋଜନପାଇଁ) ଫଳଂ (ବୃକ୍ଷାଦିଜନିତ ଫଳ) ଅଳଂ (ପର୍ଯ୍ୟାପ୍ତ) ପାନାୟ (ପିଇବା ପାଇଁ) ସ୍ୱାଦୁ ତୋୟଂ (ସୁମଧୁର ଜଳ) ଶୟନଂ (ଶୋଇବା

ପାଇଁ) ଅବନୀପୃଷ୍ଠଂ (ଭୂପୃଷ୍ଠ) ବାସସୀ (ବସ୍ତ୍ରଦ୍ୱୟ) ବଲ୍‌କଲେ (ଦୁଇଟି ବଲ୍‌କଲ ଅଛି) ।

ଅର୍ଥ—ଭୋଜନ ପାଇଁ ନାନାପ୍ରକାର ଫଳମୂଳ, ପିଇବା ପାଇଁ ସୁମଧୁର ଜଳ, ଶୋଇବା ପାଇଁ ଭୂତଳ ଶଯ୍ୟା, ପିନ୍ଧିବା ପାଇଁ ବଲ୍‌କଲ ପର୍ଯ୍ୟାପ୍ତ ପରିମାଣରେ ଉପଲବ୍ଧ ହେଉଥିବାବେଳେ ସଦ୍ୟଲବ୍ଧ କରିଥିବା ଧନର ଅହଙ୍କାରରେ ମତ୍ତ, ବିଭ୍ରାନ୍ତ ଓ ବିବେକହୀନ ଦୁର୍ଜନମାନଙ୍କର (୧) ଉଦ୍ଧତ ବ୍ୟବହାର ଓ କୁବାକ୍ୟ ସହ୍ୟ କରିବା ପାଇଁ ମୁଁ ଆଦୌ ସମର୍ଥ ନୁହେଁ ।

ଅଜାନନ୍‌ଦାହାତ୍ମ୍ୟଂ ପତତୁ ଶଲଭସ୍ତୀବ୍ରଦହନେ
ସ ମୀନୋଽପ୍ୟଜ୍ଞାନାଦ୍‌ବଡ଼ିଶଯୁତମଶ୍ନାତୁ ପିଶିତମ୍ ।
ବିଜାନନ୍ତୋଽପ୍ୟେତେ ବୟମିହ ବିପଜ୍ଜାଳଜଟିଳା-
ନ୍ନ ମୁଞ୍ଚାମଃ କାମାନହହ ଗହନୋ ମୋହମହିମା ॥୨୧॥

ଅନ୍ୱୟ—ଶଲଭଃ (ପତଙ୍ଗ) ଦାହାତ୍ମ୍ୟଂ (ଦାହିକା ଶକ୍ତିକୁ) ଅଜାନନ୍ (ନ ଜାଣି) ତୀବ୍ରଦହନେ (ଅଗ୍ନିରେ) ପତତୁ (ପଡ଼େ, ପଡ଼ୁ) ସଃ ମୀନଃ ଅପି (ସେହି ମାଛ ମଧ୍ୟ) ଅଜ୍ଞାନାତ୍ (ଅଜ୍ଞତାବଶତଃ) ବଡ଼ିଶଯୁତଂ (ବନ୍ଶୀଯୁକ୍ତ) ପିଶିତଂ (ମାଂସକୁ) ଅଶ୍ନାତୁ (ଖାଏ) ଏତେ ବୟମ୍ (ଏଇ ଆମ୍ଭେମାନେ) ଇହ (ଏହି ସଂସାରରେ) କାମାନ୍ (ବିଷୟବାସନାକୁ) ବିପଜ୍ଜାଳଜଟିଳାନ୍ (ବିପଦର ଦୃଢ଼ ଜାଲ ସ୍ୱରୂପ) ବିଜାନନ୍ତଃ ଅପି (ଜାଣି ମଧ୍ୟ) ନ ମୁଞ୍ଚାମଃ (ତ୍ୟାଗ କରିପାରୁ ନାହୁଁ) ଅହହ (ହାୟ) ମୋହମହିମା ଗହନଃ (ମୋହର ମହିମା ଅତି ଗୂଢ଼, ଦୁରଧିଗମ୍ୟ) ।

ଅର୍ଥ—ପତଙ୍ଗ ଅଗ୍ନିର ଦାହିକା ଶକ୍ତି ନଜାଣି ଜଳନ୍ତା ନିଆଁକୁ ଡେଇଁପଡ଼େ । ମାଛ ମୃତ୍ୟୁର କାରଣ ନଜାଣି ବନ୍ଶୀରେ ଗୁନ୍ଥାଥିବା ମାଂସ-ଖଣ୍ଡକୁ ଖାଏ । କିନ୍ତୁ ଆମ୍ଭେମାନେ ଏହି ସଂସାରର ସୁଖଭୋଗ ବହୁ ବିପଦୁ-

(୧) ଅର୍ଦ୍ଧଂଶ ପଣ୍ଡିତୋ ରାଜା ମୂର୍ଖପୁତ୍ରୋହି ପଣ୍ଡିତଃ
ନିର୍ଦ୍ଧନଶ୍ଚ ଧନଂ ପ୍ରାପ୍ୟ ତୃଣବତ୍ ମନ୍ୟତେ ଜଗତ୍ ॥

ଫଳୁଲ ହୋଇ ଜାଣି ମଧ୍ୟ ବିଷୟବାସନା ତ୍ୟାଗ କରିପାରୁ ନାହୁଁ । ହାୟ ହାୟ, ଅଜ୍ଞାନର ମୋହ କେତେ ଗଭୀର ?

ବିପୁଲହୃଦୟୈର୍ଧନ୍ୟୈଃ କୈଶ୍ଚିଜ୍ଜଗଜ୍ଜନିତଂ ପୁରା
ବିଧୃତମପରୈର୍ଦତ୍ତଂ ଚାନ୍ୟୈର୍ବିଜିତ୍ୟ ତୃଣଂ ଯଥା ।
ଇହ ହି ଭୁବନାନ୍ୟନ୍ୟେ ଧୀରାଶ୍ଚତୁର୍ଦଶ ଭୁଞ୍ଜତେ
କତିପୟପୁରସ୍ୱାମ୍ୟେ ପୁଂସାଂ କ ଏଷ ମଦଜ୍ୱରଃ ॥୨୨॥

ଅନ୍ୱୟ—କୈଃ ଚିତ୍ (କେତେକ) ବିପୁଲହୃଦୟୈଃ (ଉଦାର ଚିତ୍ତ) ଧନ୍ୟୈଃ (ଧନ୍ୟବାଦାର୍ହ ପୁରୁଷଙ୍କ ଦ୍ୱାରା) ପୁରା (ପୂର୍ବେ) ଜଗତ୍ (ଏହି ବିଶ୍ୱ) ଜନିତଂ (ସୃଷ୍ଟ ହୋଇଥିଲା) ଅପରୈଃ (ଅନ୍ୟ କେତେକଙ୍କ ଦ୍ୱାରା) ବିଧୃତଂ (ପାଳିତହେଲା) ଅନ୍ୟୈଃ ଚ (ଆଉ କେତେକଙ୍କ ଦ୍ୱାରା ମଧ୍ୟ) ତୃଣଂ ଯଥା (ତୃଣପରି) ବିଜିତ୍ୟ (ଜୟକରି) ଦତ୍ତଂ (ଦାନ ଦିଆଗଲା) ହି (ନିଶ୍ଚିତଭାବେ) ଅନ୍ୟେ ଧୀରାଃ (ଅନ୍ୟ କେତେକ ବୁଦ୍ଧିମାନ୍) ଇହ (ଏଠି) ଚତୁର୍ଦଶ ଭୁବନାନି (ଚଉଦ ଭୁବନ) ଭୁଞ୍ଜତେ (ଭୋଗ କରୁଛନ୍ତି) କତିପୟପୁରସ୍ୱାମ୍ୟେ (ମାତ୍ର କେତୋଟି ନଗରର ପ୍ରଭୁତ୍ୱ ହାସଲ କରି) ପୁଂସାଂ (ପୁରୁଷମାନଙ୍କର) କଃ ଏଷଃ ମଦଜ୍ୱରଃ (କି ଗର୍ବ ପ୍ରକାଶ ପାଉଛି) ।

ଅର୍ଥ—ପୂର୍ବେ କେତେକ ଉଦାରହୃଦୟର ଲୋକ ରାଜ୍ୟ ପ୍ରତିଷ୍ଠା କରିଥିଲେ । ଅନ୍ୟ କେତେକ ଯଥାର୍ଥଭାବେ ତାକୁ ପାଳନ କରିଥିଲେ । ଆଉ କେତେକ ତାକୁ ଜୟକରି ଅନ୍ୟକୁ ଦାନ କରିଥିଲେ । କେତେକ ବୁଦ୍ଧିମାନ୍ ବ୍ୟକ୍ତି ଏବେବି ଚଉଦ ଭୁବନ ପାଳନ କରିବାକୁ ସମର୍ଥ । ତଥାପି କେତୋଟି ମାତ୍ର ନଗର ଅଧିକାର କରି ମଣିଷ କ'ଣ ପାଇଁ ଗର୍ବରେ ଉନ୍ମତ୍ତ ହେଉଛି ?

ତ୍ୱଂ ରାଜା ବୟମପ୍ୟୁପାସିତଗୁରୁପ୍ରଜ୍ଞାଭିମାନୋନ୍ନତାଃ
ଖ୍ୟାତସ୍ତ୍ୱଂ ବିଭବୈର୍ଯଶାଂସି କବୟୋ ଦିକ୍ଷୁ ପ୍ରତନ୍ୱନ୍ତିନଃ ।

ଇତ୍ଥଂ ମାନଧନାନ୍ତଦୂରମୁଭୟୋରପ୍ୟାବୟୋରନ୍ତରଂ
ଯଦ୍ୟସ୍ମାସୁ ପରାଙ୍ମୁଖୋଽସି ବୟମପ୍ୟେକାନ୍ତତୋ ନିସ୍ପୃହାଃ ॥୨୩॥

ଅନ୍ୱୟ—ତ୍ୱଂ ରାଜା (ତୁମେ ରାଜା) ବୟମ୍ ଅପି (ଆମେ ମଧ୍ୟ) ଉପାସିତଗୁରୁପ୍ରଜ୍ଞାଭିମାନୋନ୍ନତାଃ (ଗୁରୁଙ୍କ ଉପାସନାଦ୍ୱାରା ଲାଭ କରିଥିବା ଜ୍ଞାନରେ ଉନ୍ନତ) ତ୍ୱଂ ବିଭବୈଃ ଖ୍ୟାତଃ (ତୁମେ ଧନସମ୍ପଦ ଦ୍ୱାରା ବିଖ୍ୟାତ) ନଃ (ଆମର) ଯଶାଂସି (ଯଶକୀର୍ତ୍ତିକୁ) କବୟଃ (କବିମାନେ) ଦିକ୍ଷୁ (ଚାରିଆଡ଼େ) ପ୍ରତନ୍ୱନ୍ତି (ବିସ୍ତାର କରୁଛନ୍ତି) ଇତ୍ଥଂ (ଏହିପରି) ଆବୟୋଃ ଉଭୟୋଃ (ଆମ ଉଭୟଙ୍କ ମଧ୍ୟରେ) ମାନଧନାଦ୍ଦୂରମ୍ ଅନ୍ତରଂ (ମାନ ଓ ଧନହେତୁ ପାର୍ଥକ୍ୟ ବେଶି ନାହିଁ) ଯଦି ଅସ୍ମାସୁ (ଯଦି ଆମଠାରେ) ପରାଙ୍ମୁଖଃ ଅସି (ବିମୁଖ ହେଉଛ) ବୟମ୍ ଅପି (ଆମେ ମଧ୍ୟ) ଏକାନ୍ତତଃ (ନିଶ୍ଚିତଭାବେ) ନିସ୍ପୃହାଃ (ପରାଙ୍ମୁଖ ଅଟୁ) ।

ଅର୍ଥ—ହେ ରାଜନ୍ ! ତୁମେ ରାଜା ହୋଇ ଯଦି ନିଜକୁ ବଡ଼ ବୋଲି ଭାବୁଛ ତେବେ ଆମେ ମଧ୍ୟ ଗୁରୁସେବାଲବ୍ଧ ପ୍ରଜ୍ଞାରେ ଶ୍ରେଷ୍ଠ । ତୁମେ ଧନ-ସମ୍ପଦରେ ପ୍ରସିଦ୍ଧ ହେଲେ ବି ଆମେ ଯଶସ୍ୱୀ । କବିମାନେ ଚାରିଆଡ଼େ ଆମର ଯଶୋଗାନ କରୁଛନ୍ତି । ଏହିପରି ଧନ ଓ ସମ୍ମାନ ଦୃଷ୍ଟିରୁ ଆମ ଉଭୟଙ୍କ ମଧ୍ୟରେ ଯଥେଷ୍ଟ ବ୍ୟବଧାନ ଅଛି । ତେଣୁ ତୁମେ ଯଦି ଆମକୁ ଅନାଦର କରିବ ତେବେ ଆମେ ମଧ୍ୟ ତୁମ ପ୍ରତି ନିସ୍ପୃହ ହେବୁ ।

ଅଭୁକ୍ତାୟାଂ ଯସ୍ୟାଂ କ୍ଷଣମପି ନ ଯାତଂ ନୃପଶତୈ-
ର୍ଭୁବସ୍ତସ୍ୟାଲ୍ଲାଭେ କ ଇବ ବହୁମାନଃ କ୍ଷିତିଭୁଜାମ୍ ।
ତଦଂଶସ୍ୟାପ୍ୟଂଶେ ତଦବୟବଲେଶେଽପି ପତୟୋ
ବିଷାଦେ କର୍ତ୍ତବ୍ୟେ ବିଦଧତି ଜଡାଃ ପ୍ରତ୍ୟୁତ ମୁଦମ୍ ॥୨୪॥

ଅନ୍ୱୟ—କ୍ଷିତିଭୁଜାଂ (ରାଜାମାନଙ୍କର) ତସ୍ୟାଃ ଭୁବଃ ଲାଭେ (ରାଜ୍ୟ ଜୟ କରିବାରେ) କଃ ଇବ ବହୁମାନଃ (କି ପ୍ରକାର ଗର୍ବ ହେଉଛି) ଯସ୍ୟାଂ (ଯେଉଁ ପୃଥିବୀରେ) ନୃପଶତୈଃ (ଶତଶତ ରାଜା) କ୍ଷଣମ୍ ଅପି (କ୍ଷଣେ ମଧ୍ୟ) ଅଭୁକ୍ତାୟାଂ (ଭୋଗ ନକରି) ନ ଯାତଂ (ଯାଇ ନାହାନ୍ତି) ତତ୍ (ତେଣୁ)

ଅଂଶେଷ୍ୟ ଅଂଶେ ଅପି (ଭାଗେ ମାତ୍ର) ତତ୍ ଅବସ୍ଥବଲେଶେ ଅପି (ଏକ ଖଣ୍ଡିତ ଅଂଶରେ ମଧ୍ଯ) ପତସ୍ଯଃ (ପ୍ରଭୁମାନେ) ବିଷାଦେ (ଦୁଃଖରେ) କର୍ତ୍ତବ୍ୟେ (କାର୍ଯ୍ୟରେ) ଜଡ଼ାଃ (ମୂର୍ଖ) ପ୍ରତ୍ୟୁତ (ବିପରୀତ ଭାବରେ) ମୁଦଂ (ଆନନ୍ଦ) ବିଦଧତି (ଲାଭକରୁଛନ୍ତି) ।

ଅର୍ଥ—ପୂର୍ବେ ଶତ ଶତ ରାଜା ଯେଉଁ ପୃଥିବୀକୁ କ୍ଷଣକ ପାଇଁ ମଧ୍ଯ ଅଭୁକ୍ତ ରଖିନାହାନ୍ତି, ସେହି ପୃଥିବୀରେ ଆଧିପତ୍ୟ ବିସ୍ତାର କରି ରାଜାମାନେ କି ଗର୍ବ କରନ୍ତି ? ସେହି ବିରାଟ ପୃଥିବୀର ଏକ ଅଂଶର କ୍ଷୁଦ୍ରତମ ଅଂଶରେ ରାଜା ହୋଇ ଦୁଃଖିତ ହେବା ପରିବର୍ତ୍ତେ ସେମାନେ ସନ୍ତୋଷ ଲାଭକରି ଆନନ୍ଦିତ ହୁଅନ୍ତି ।

ମୃତ୍ପିଣ୍ଡୋ ଜଳରେଖୟା ପରିବୃତଃ ସର୍ବୋଽପ୍ୟୟଂ ନନ୍ୱଣୁ-
ସ୍ତ୍ୱଂଶୀକୃତ୍ୟ ସ ଏବ ସଂଯୁଗଶତୈ ରାଜ୍ଞାଂ ଗଣୈର୍ଭୁଜ୍ୟତେ ।
ତେ ଦଦ୍ୟୁର୍ଦ୍ଦଦତେଽଥ ବା ନ କିମପି କ୍ଷୁଦ୍ରା ଦରିଦ୍ରା ଭୃଶଂ
ଧିଗ୍‌ଧିକ୍‌ତାନ୍‌ପୁରୁଷାଧମାନ୍ଧନକଣଂ ବାଞ୍ଛନ୍ତି ତେଭ୍ୟୋଽପି ଯେ ॥୨୫॥

ଅନ୍ୱୟଃ—ଅୟଂ ମୃତ୍ପିଣ୍ଡଃ ଅଣୁଃ (ଏହି ଭୂମି ଅତି କ୍ଷୁଦ୍ର) ଜଳରେଖୟା (ସମୁଦ୍ରଦ୍ୱାରା) ସର୍ବଃ ଅପି (ସବୁଆଡ଼େ) ପରିବୃତଃ ନନୁ (ନିଶ୍ଚିତରୂପେ ପରିବେଷ୍ଟିତ) ସ ଏବ (ସେହି ଭୂମି) ରାଜ୍ଞାଂ ଗଣୈଃ (ରାଜାମାନଙ୍କ ଦ୍ୱାରା) ସଂଯୁଗଶତୈଃ (ଶତ ଶତବାର ଯୁଦ୍ଧରେ) ଅଂଶୀକୃତ୍ୟ (ଭାଗଭାଗକରି) ଭୁଜ୍ୟତେ (ଭୋଗକରାଯାଉଛି) ତେ କିମ୍ ଅପି ଦଦ୍ୟୁଃ (ସେମାନେ କିଛି ଦାନକଲେ) ଅଥ (ପରେ) ଦଦତେ ନ ବା (ଦିଅନ୍ତି ବା ନଦିଅନ୍ତି) କ୍ଷୁଦ୍ରାଃ (ତୁଚ୍ଛ) ଭୃଶଂ ଦରିଦ୍ରା (ଅତୀବ ଦରିଦ୍ର) ତେଭ୍ୟଃ ଅପି (ସେମାନଙ୍କଠାରୁ ମଧ୍ଯ) ଯେ (ଯେଉଁମାନେ) ଧନକଣଂ ବାଞ୍ଛନ୍ତି (ଧନ ପ୍ରାର୍ଥନା କରନ୍ତି) ତାନ୍ ପୁରୁଷାଧମାନ୍ (ସେହି ଅଧମ ପୁରୁଷଙ୍କୁ) ଧିକ୍ ଧିକ୍ ।

ଅର୍ଥ—ସମୁଦ୍ରର ଜଳରେଖାଦ୍ୱାରା ପରିବେଷ୍ଟିତ ଏହି ସମଗ୍ର ପୃଥିବୀ ଅତି କ୍ଷୁଦ୍ରାକାର । ଶତଶତବାର ଯୁଦ୍ଧକରି ରାଜାମାନେ ତାହାକୁ ଭାଗଭାଗ କରି ଭୋଗ କରନ୍ତି । ସେହି ହୀନ ଓ ଦରିଦ୍ର ରାଜାମାନେ ଅନ୍ୟକୁ କିଛି

ଦାନ ବ ଦଅନ୍ତି । କିନ୍ତୁ ଯେଉଁ ଅଧମ ପୁରୁଷମାନେ ଏହିପରି ରାଜାଙ୍କଠାରୁ ସାମାନ୍ୟତମ ଧନ ଆଶା କରନ୍ତି ସେମାନଙ୍କୁ ଧିକ୍ ।

ନ ନଟା ନ ବିଟା ନ ଗାୟକା ନ ପରଦ୍ରୋହନିବଦ୍ଧବୁଦ୍ଧୟଃ ।
ସ୍ତନଭାରନମିତା ନ ଯୋଷିତୋ ନୃପସଦ୍ମସୁ ନାମ କେ ବୟମ୍ ॥୨୭॥

ଅନ୍ୱୟ—ନୃପସଦ୍ମସୁ (ରାଜଗୃହରେ) ବୟଂ ନାମକେ (ଆମେ କିଏ, କିଏ ଆମକୁ ପଚାରୁଛି) ନ ନଟାଃ (ଆମେ ନାଟୁଆ ନୋହୁଁ) ନ ବିଟାଃ (ବିଟ ପୁରୁଷ ନୋହୁଁ) ନ ଗାୟକାଃ (ଗାୟକ ବି ନୋହୁଁ) ପରଦ୍ରୋହନିବଦ୍ଧବୁଦ୍ଧୟଃ ନ (ଅନ୍ୟ ପ୍ରତି ଶତ୍ରୁତା ଆଚରଣ କରିବାର ବୁଦ୍ଧି ମଧ୍ୟ ଆମର ନାହିଁ) ସ୍ତନଭାରନମିତାଃ ଯୋଷିତଃ ନ (ସ୍ତନଭାରରେ ନମ୍ର ହୋଇଥିବା ସୁନ୍ଦରୀ ରମଣୀ ମଧ୍ୟ ହୋଇନାହୁଁ) ।

ଅର୍ଥ—ଆମର ନାଟ୍ୟରେ ନିପୁଣତା ନାହିଁ କି ନାୟକ ହେବାର ଯୋଗ୍ୟତା ନାହିଁ । ସଙ୍ଗୀତ ପ୍ରବୀଣ ନୋହୁଁ କି ଅନ୍ୟ ପ୍ରତି ଶତ୍ରୁତା ଆଚରଣ କରିବାର ବୁଦ୍ଧି ଆମର ନାହିଁ । ସ୍ତନଭାରନତା ରମଣୀ ମଧ୍ୟ ଆମେ ହୋଇନୁ । ତେଣୁ ରାଜାଙ୍କ ଘରେ କିଏ ଆମକୁ କଣ ପାଇଁ ପଚାରିବ ?

ସ ଜାତଃ କୋଽପ୍ୟାସୀନ୍ମଦନରିପୁଣା ମୂର୍ଦ୍ଧ୍ନି ଧବଳଂ
କପାଳଂ ଯସ୍ୟୋଚ୍ଚୈର୍ବିନିହିତମଳଙ୍କାରବିଧୟେ ।
ନୃଭିଃ ପ୍ରାଣତ୍ରାଣପ୍ରବଣମତିଭିଃ କୈଶ୍ଚିଦଧୁନା
ନମଦ୍ଭିଃ କଃ ପୁଂସାମୟମତୁଳଦର୍ପଜ୍ୱରଭରଃ ॥୨୮॥

ଅନ୍ୱୟ—ସଃ କଃ ଅପି ଜାତଃ ଆସୀତ୍ (କେହି ସେପରି ଅନିର୍ବଚନୀୟ ଚରିତ୍ର ଜାତ ହୋଇଛି) ଯସ୍ୟ (ଯାହାର) ଧବଳଂ କପାଳଂ (ଉଜ୍ଜ୍ୱଳ ମସ୍ତକ) ମଦନରିପୁଣା (ମହାଦେବ) ଉଚ୍ଚୈଃ ମୂର୍ଦ୍ଧ୍ନି (ମସ୍ତକର ଉପର ଭାଗରେ) ଅଳଙ୍କାରବିଧୟେ (ଅଳଙ୍କାର ସ୍ୱରୂପ) ବିନିହିତଂ (ଧାରଣ କରିଛନ୍ତି) ପ୍ରାଣତ୍ରାଣପ୍ରବଣମତିଭିଃ (ପ୍ରାଣ ରକ୍ଷଣ ପରାୟଣ) କୈଃ ଚିତ୍ ନୃଭିଃ (କେତେକ ଲୋକଙ୍କ ଦ୍ୱାରା) ଅଧୁନା (ବର୍ତ୍ତମାନ) ନମଦ୍ଭିଃ (ନମସ୍କାର କରୁଥିବା) ପୁଂସାଂ

(ପୁରୁଷମାନଙ୍କର) ଅସ୍ମମ୍ ଅତୁଳଦର୍ପଜ୍ୱରଭରଃ (ଏହି ଅତଗର୍ବରୋଗ) କଃ (କଣ ପାଇଁ) ।

ଅର୍ଥ—ସେହି ବ୍ୟକ୍ତିର ଜନ୍ମ ସାର୍ଥକ ଯାହାର ଶିର ଅସ୍ଥିକୁ (କପାଳ) ମହାଦେବ ଅଲଙ୍କାରରୂପେ ନିଜ ମସ୍ତକର ଉପରଭାଗରେ ଧାରଣ କରନ୍ତି । କିନ୍ତୁ ପ୍ରାଣରକ୍ଷା ପାଇଁ ବ୍ୟାକୁଳ ହେଉଥିବା ଲୋକଙ୍କଠାରୁ ନମସ୍କାର ପାଇ ଯେଉଁମାନେ ଅତି ଗର୍ବ ପ୍ରକାଶ କରନ୍ତି ତାହା କ'ଣ ପାଇଁ ଓ କାହା ପାଇଁ ?

ଅଶ୍ନୀମହି ବୟଂ ଭିକ୍ଷାମାଶାବାସୋ ବସୀମହି ।
ଶୟୀମହି ମହୀପୃଷ୍ଠେ କୁର୍ବୀମହି କମୀଶ୍ୱରୈଃ ॥୨୮॥

ଅନ୍ୱୟ—ବୟଂ ଭିକ୍ଷାଂ (ଆମେ ଭିକ୍ଷାନ୍ନ) ଅଶ୍ନୀମହି (ଖାଉଛୁ) ଆଶା-ବାସଃ (ଦିକ୍ ରୂପକ ବସନ) ବସୀମହି (ପିନ୍ଧୁଛୁ) ମହୀପୃଷ୍ଠେ (ଭୂପୃଷ୍ଠରେ) ଶୟୀମହି (ଶୟନ କରୁଛୁ) ଈଶ୍ୱରୈଃ (ପୂଜ୍ୟ ପ୍ରଭୁଙ୍କ ଦ୍ୱାରା) କିଂ (କଣ) କୁର୍ବୀମହି (କରିବା ?) ।

ଅର୍ଥ—ଆମେ ଭିକ୍ଷାନ୍ନ ଭୋଜନ କରୁଛୁ । ଦିକ୍ ବସ୍ତ୍ର ପରିଧାନ କରୁଛୁ ଅର୍ଥାତ୍ ଦିଗମ୍ବର ହୋଇ ରହିଛୁ । ଭୂ-ପୃଷ୍ଠରେ ଶୟନ କରୁଛୁ । ତେଣୁ ପ୍ରଭୁଙ୍କ ପାଖରେ ଆମର କି ପ୍ରୟୋଜନ ଅଛି ?

ଅର୍ଥାନାମୀଶିଷେ ତ୍ୱଂ ବୟମପି ଚ ଗିରାମୀଶ୍ମହେ ଯାବଦିତ୍ଥଂ
ଶୂରସ୍ତ୍ୱଂ ବାଗ୍ମିଦର୍ପଜ୍ୱରଶମନବିଧାବକ୍ଷୟଂ ପାଟବଂ ନଃ ।
ସେବନ୍ତେ ତ୍ୱାଂ ମଦାନ୍ଧା ମତିମଳହତୟେ ମାମପି ଶ୍ରୋତୁକାମା
ମୟ୍ୟପ୍ୟାସ୍ଥା ନ ତେ ଚେତ୍ତ୍ୱୟି ମମ ସୁତରାମେବରାଜନ୍ନନାସ୍ଥା ॥୨୯॥

ଅନ୍ୱୟ—ରାଜନ୍ (ହେ ନୃପତେ !) ତ୍ୱମ୍ ଅର୍ଥାନାମ୍ ଈଶିଷେ (ତୁମେ ଧନର ଈଶ୍ୱର) ବୟମ୍ ଅପି ଚ ଗିରାମ୍ ଈଶ୍ମହେ (ଆମେ ବି ଶାସ୍ତ୍ରର ଈଶ୍ୱର) ଯାବତ୍ ଇତ୍ଥଂ (ଏହି କ୍ରମରେ) ତ୍ୱଂ ଶୂରଃ (ତୁମେ ବୀର) ନଃ (ଆମ୍ଭର) ବାଗ୍ମିଦର୍ପଜ୍ୱରଶମନବିଧୌ (ବାବଦୂକମାନଙ୍କ ଗର୍ବ ରୂପକ ଜ୍ୱର ଶାନ୍ତ

କରିବାରେ) ଅକ୍ଷୟଂ ପାଟବଂ (ଅଶେଷ ଦକ୍ଷତା ଅଛି) ମଦାନ୍ଧାଃ (ଲୋଭାନ୍ଧ ମଦରେ ଅନ୍ଧଲୋକେ) ତ୍ୱାଂ ସେବନ୍ତେ (ତୁମକୁ ସେବା କରୁଛନ୍ତି) ଶ୍ରୋତୁକାମାଃ (ଶାସ୍ତ୍ରଶ୍ରବଣାଭିଳାଷୀମାନେ) ମାମ୍ ଅପି (ମୋତେ ମଧ୍ୟ) ମତିମଳହୃତୟେ (ବୁଦ୍ଧିର କାଳୁଷ୍ୟ ଦୂର ପାଇଁ) ସେବନ୍ତେ (ସେବାକରୁଛନ୍ତି) ତେ ମୟି ଅପି ଆସ୍ଥା ନ ଚେତ୍ (ତୁମର ଯଦି ମୋ'ଠାରେ ଆସ୍ଥା ନାହିଁ) ସୁତରାଂ ତ୍ୱୟି ଅପି (ତୁମଠାରେ ମଧ୍ୟ) ମମ ଅନାସ୍ଥା ଏବ (ମୋର ମଧ୍ୟ ଆସ୍ଥାନାହିଁ) ।

ଅର୍ଥ—ରାଜନ୍ ! ତୁମେ ପର୍ଯ୍ୟାପ୍ତ ଧନର ଅଧିକାରୀ । ମୁଁ ମଧ୍ୟ ଶାସ୍ତ୍ର-ଜ୍ଞାନରେ ପାରଦର୍ଶୀ । ତୁମେ ବୀର । ମୁଁ ମଧ୍ୟ ପ୍ରତିବାଦୀ ପଣ୍ଡିତଙ୍କର ଗର୍ବ ଖର୍ବ କରିବାରେ ଧୁରନ୍ଧର । ମଦାନ୍ଧମାନେ ଧନଲୋଭରେ ତୁମକୁ ସେବା-କରନ୍ତି । ଶାସ୍ତ୍ରଶ୍ରବଣାଭିଳାଷୀମାନେ ବୁଦ୍ଧିର କାଳୁଷ୍ୟ, ଚିତ୍ତର ମାଳିନ୍ୟ ଦୂର କରିବାପାଇଁ ମୋତେ ସେବା କରନ୍ତି । ସୁତରାଂ ଆମ ଦୁହିଁଙ୍କର ଅବସ୍ଥା ସମାନ । ତେଣୁ ମୋ'ଠାରେ ଯଦି ତୁମର ଆସ୍ଥା ଓ ଶ୍ରଦ୍ଧା ନରହିବନ୍ତି ତେବେ ତୁମଠାରେ ମଧ୍ୟ ମୋର ଆସ୍ଥା ରହିବ ନାହିଁ ।

ଯଦା କିଞ୍ଚିଦ୍‌ଜ୍ଞୋଽହଂ ଗଜ ଇବ ମଦାନ୍ଧଃ ସମଭବଂ
ତଦା ସର୍ବଜ୍ଞୋଽସ୍ମୀତ୍ୟଭବଦବଲିପ୍ତଂ ମମ ମନଃ ।
ଯଦା କିଞ୍ଚିତ୍କିଞ୍ଚିଦ୍‌ବୁଧଜନସକାଶାଦବଗତଂ
ତଦା ମୂର୍ଖୋଽସ୍ମୀତି ଜ୍ୱର ଇବ ମଦୋମେ'ବ୍ୟପଗତଃ ॥୩୦॥

ଅନ୍ୱୟ—ଯଦା (ଯେତେବେଳେ) ଅହଂ (ମୁଁ) କିଞ୍ଚିଦ୍‌ଜ୍ଞଃ (ଅଳ୍ପ କିଛି ଜାଣିଲି) ତଦା (ସେତେବେଳେ) ମଦାନ୍ଧଃ ଗଜଃ ଇବ (ମଦୋନ୍ମତ୍ତ ହାତୀ ପରି) ସମଭବମ୍ (ହେଲି) ସର୍ବଜ୍ଞଃ ଅସ୍ମି ଇତି (ସର୍ବଜ୍ଞ ଅଟେ ବୋଲି) ମମ ମନଃ (ମୋର ମନ) ଅବଲିପ୍ତଂ (ଗର୍ବିତ ହେଲା) ଯଦା ବୁଧଜନସକାଶାତ୍ (ଯେତେବେଳେ ପଣ୍ଡିତମାନଙ୍କ ସହିତ ସଂସର୍ଗରୁ) କିଞ୍ଚିତ୍ କିଞ୍ଚିତ୍ ଅବଗତଂ (କିଛି କିଛି ଜାଣିଲି) ତଦା ମୂର୍ଖଃ ଅସ୍ମି ଇତି (ସେତେବେଳେ ମୁଁ ଏକ ମୂର୍ଖ ବୋଲି) ଜ୍ୱର ଇବ (ଜ୍ୱରରୋଗ ପରି) ମେ ମଦଃ (ମୋର ଗର୍ବ) ବ୍ୟପଗତଃ (ଦୂରହେଲା) ।

ଅର୍ଥ—ମୁଁ ଯେତେବେଳେ ଅଳ୍ପ କିଛି ଜାଣିଲି ସେତେବେଳେ ମଦୋନ୍ମତ୍ତ ହସ୍ତୀ ପରି ଗର୍ବରେ ଅନ୍ଧ ହୋଇଗଲି । ସର୍ବଜ୍ଞ ହୋଇଯାଇଛି ବୋଲି ମୋର ମନ ଅହଙ୍କାରରେ ପୂରିଗଲା । କିନ୍ତୁ ପଣ୍ଡିତମାନଙ୍କଠାରୁ ମୁଁ ଯେତେବେଳେ କିଛି କିଛି ଜାଣିଲି ସେତେବେଳେ ନିଜକୁ ମୂର୍ଖ ବୋଲି ଭାବିଲି ଏବଂ ମୋର ଗର୍ବ ଜ୍ୱରରୋଗ ପରି ଦୂର ହୋଇଗଲା ।

ମାନେ ମ୍ଲାୟିନି ଖଣ୍ଡିତେ ଚ ବସୁନି ବ୍ୟର୍ଥଂ ପ୍ରୟାତେଽର୍ଥିନି
କ୍ଷୀଣେ ବନ୍ଧୁଜନେ ଗତେ ପରିଜନେ ନଷ୍ଟେ ଶନୈ ର୍ଯୌବନେ ।
ଯୁକ୍ତଂ କେବଳମେତଦେବ ସୁଧିୟାଂ ଯଜ୍ଜହ୍ନୁକନ୍ୟାପୟଃ-
ପୂତଗ୍ରାବଗିରୀନ୍ଦ୍ରକନ୍ଦରଦରୀକୁଞ୍ଜେ ନିବାସଃ କ୍ୱଚିତ୍ ॥୩୧॥

ଅନ୍ୱୟ—ମାନେ (ଅଭିମାନ, ଅହଙ୍କାର) ମ୍ଲାୟିନି (ମ୍ଳାନ ହେବାପରେ) ବସୁନି (ଧନସମ୍ପଦ) ଖଣ୍ଡିତେ ଚ (ଭାଗ ଭାଗ ହେବାପରେ) ଅର୍ଥିନି (ପ୍ରାର୍ଥୀ-ଲୋକେ) ବ୍ୟର୍ଥଂ ପ୍ରୟାତେ (ନିଷ୍ଫଳ ହୋଇ ଘରୁ ଫେରିଯିବାପରେ) ବନ୍ଧୁଜନେ କ୍ଷୀଣେ (ବନ୍ଧୁବାନ୍ଧବମାନେ ତ୍ୟାଗ କରିବାପରେ) ପରିଜନେ ଗତେ (ସେବକମାନେ ଚାଲିଯାଆନ୍ତେ) ଯୌବନେ ଶନୈଃ ନଷ୍ଟେ (ଯୌବନ ନଷ୍ଟହେବା ପରେ) ସୁଧିୟାଂ (ବିଚାରଶୀଳମାନଙ୍କର) ଏତତ୍ ଏବ ଯୁକ୍ତଂ (ଏହାହିଁ ନିଶ୍ଚିତଭାବେ ଯୁକ୍ତିଯୁକ୍ତ ମନେହୁଏ) ଯତ୍ (ଯେ) ଜହ୍ନୁକନ୍ୟାପୟଃ-ପୂତଗ୍ରାବଗିରୀନ୍ଦ୍ରକନ୍ଦରଦରୀକୁଞ୍ଜେ (ଗଙ୍ଗାର ଜଳଦ୍ୱାରା ପବିତ୍ର ହୋଇଥିବା ହିମାଳୟର ଲତାବେଷ୍ଟିତ କୌଣସି ଗୁମ୍ଫାରେ) କ୍ୱଚିତ୍ ନିବାସଃ (କେଉଁଠି ହେଲେ ବାସକରିବା ଉଚିତ) ।

ଅର୍ଥ—ମାନସମ୍ମାନ କମିଗଲେ, ଧନସମ୍ପଦ ଶେଷ ହେଲେ, ପ୍ରାର୍ଥୀମାନେ ବିଫଳ ହୋଇ ଫେରିଗଲେ, ଆତ୍ମୀୟସ୍ୱଜନ ପରିତ୍ୟାଗ କରି ଚାଲିଗଲେ, ଭୃତ୍ୟମାନେ ପଳାଇଗଲେ, ଧୀରେ ଧୀରେ ଯୌବନ ନଷ୍ଟ ହୋଇଗଲେ, ବିଚାରଶୀଳ ବ୍ୟକ୍ତି ଜାହ୍ନବୀ ଜଳରେ ପବିତ୍ର ହିମାଳୟର ଲତା ଆଚ୍ଛାଦିତ କୌଣସି ଗୁମ୍ଫାରେ ବାସକରିବା ଯୁକ୍ତିସଙ୍ଗତ ମନେହୁଏ ।

ପରେଷାଂ ଚେତାଂସି ପ୍ରତିଦିବସମାରାଧ୍ୟ ବହୁଧା
ପ୍ରସାଦଂ କିଂ ନେତୁଂ ବିଶସି ହୃଦୟ କ୍ଲେଶକଲିଳମ୍ ।
ପ୍ରସନ୍ନେ ତ୍ୱଯ୍ୟନ୍ତଃ ସ୍ୱୟମୁଦିତଚିନ୍ତାମଣିଗୁଣେ
ବିମୁକ୍ତଃ ସଂକଳ୍ପଃ କିମଭିଳଷିତଂ ପୁଷ୍ୟତି ନ ତେ ॥୩୨॥

ଅନ୍ୱୟ—ହୃଦୟ (ରେ ମନ !) ପ୍ରତିଦିବସଂ (ପ୍ରତିଦିନ) ବହୁଧା ଆରାଧ୍ୟ (ବହୁପ୍ରକାର ସେବାକରି) ପରେଷାଂ ଚେତାଂସି (ଅନ୍ୟମାନଙ୍କ ମନକୁ) ପ୍ରସାଦଂ ନେତୁଂ (ପ୍ରସନ୍ନ କରିବା ପାଇଁ) କ୍ଲେଶକଲିଲଂ ବିଶସି କିଂ (କାହିଁକି ବିଶେଷ ଦୁଃଖ ବରଣ କରୁଛୁ) ତ୍ୱୟି ସ୍ୱୟମ୍ ଅନ୍ତଃ ପ୍ରସନ୍ନେ (ତୁ ନିଜେ ଭିତରେ ଖୁସି ହେଲେ) ଉଦିତଚିନ୍ତାମଣିଗୁଣେ (ଅନ୍ତରରେ ଚିନ୍ତା ରହିର ଉଦୟ ହେଲେ) ବିମୁକ୍ତଃ ସଂକଳ୍ପଃ (ମାନସିକ କର୍ମ ତ୍ୟାଗକରି) ତେ (ତୁମର) ଅଭିଲଷିତଂ (ଅଭିଳାଷ) କିଂ ନ ପୁଷ୍ୟତି (ପୂର୍ଣ୍ଣ ହେବନାହିଁ କି ?) ।

ଅର୍ଥ—ରେ ମନ ! ପ୍ରତିଦିନ ବହୁ କଷ୍ଟ ସହି ଅନ୍ୟକୁ ସନ୍ତୁଷ୍ଟ କରି ଅନୁଗ୍ରହ ପାଇବା ପାଇଁ କାହିଁକି ଚେଷ୍ଟା କରୁଛୁ ? ନିଜେ ନିଜ ମଧ୍ୟରେ ସନ୍ତୁଷ୍ଟ ରହି ଅନ୍ତର୍ମୁଖୀ ହେଲେ ଏ ସଂସାରରେ ତୋର କୌଣସି ଅଭିଳାଷ ଅପୂର୍ଣ୍ଣ ହୋଇ ରହିବନାହିଁ ।

ଅନାବର୍ତ୍ତୀ କାଳୋ ବ୍ରଜତି ସ ବୃଥା ତନ୍ନ ଗଣିତଂ
ଦଶାସ୍ତାସ୍ତାଃ ସୋଢ଼ା ବ୍ୟସନଶତସଂପାତବିଧୁରାଃ ।
କିୟଦ୍‌ବା ବକ୍ଷ୍ୟାମଃ କିମିବ ବତ ନାତ୍ମନ୍ୟପକୃତଂ
ତ୍ୱୟା ଯାବଜ୍ଜୀବମ୍ପୁନରପି ତଦେବ ବ୍ୟବସିତମ୍ ॥୩୩॥

ଅନ୍ୱୟ—ତ୍ୱୟା (ତୁ) ସଃ ଅନାବର୍ତ୍ତୀ (ସେହି ଫେରି ନ ଆସିବା ସମୟ) ବୃଥା ବ୍ରଜତି (ବୃଥାରେ କଟିଲା) ତତ୍ ନ ଗଣିତମ୍ (ତାହା ବିଗ୍ଭର କଲୁନାହିଁ) ବ୍ୟସନଶତସମ୍ପାତବିଧୁରାଃ (ଶତ ଶତ ଦୁଃସହ ଦୁଃଖାତ୍ମକ) ତାଃ ତାଃ ଦଶାଃ (ସେହି ସେହି ଅବସ୍ଥାକୁ) ସୋଢ଼ାଃ (ସହିଲୁ) କିୟତ୍ ବା ବକ୍ଷ୍ୟାମଃ (କେତେ କହିବା) ବତ ଆତ୍ମନି କିମ୍ ଇବ ନ ଅପକୃତଂ (ଆତ୍ମାକୁ କେତେ କଷ୍ଟ ନ

ଦେଇଛୁ) ଯାବତ୍ (ଯେଣୁ) ପୁନଃ ଅପି ତାବତ୍ (ପୁଣି ମଧ୍ଯ ସେହିପରି) ତତ୍ ଏବ (ତାହାହିଁ) ବ୍ୟବସିତମ୍ (କରିବାକୁ ଯାଉଛୁ) ।

ଅର୍ଥ—ରେ ହୃଦୟ ! ଯେଉଁ ସମୟ ଆଉଥରେ ଫେରିଆସିବ ନାହିଁ, ତାହା ବୃଥାରେ କଟାଇଲୁ । ଦିନେହେଲେ ସେକଥା ଭାବିଲୁ ନାହିଁ । ଆମ୍ଭକୁ କେତେ କଷ୍ଟ ଦେଲୁ ଆଉ କେତେ ଦୁଃଖଯନ୍ତ୍ରଣା ସହିଲୁ, ସେକଥା କେତେ ବା କହିବ ? ତଥାପି ଆମ୍ଭର ଅପକାର ହେଲଭଳି କାର୍ଯ୍ୟରେ ଲଗିଛୁ । ଏହା ମୂର୍ଖତା ବ୍ୟତୀତ ଅନ୍ୟ କିଛି ନୁହେଁ ।

ଅମୀଷାଂ ପ୍ରାଣାନାଂ ତୁଳିତବିଶିନୀପତ୍ରପୟସାଂ
କୃତେ କିଂ ନାସ୍ମାଭିର୍ବିଗଳିତବିବେକୈର୍ବ୍ୟବସିତମ୍ ।
ଯଦାଢ଼୍ୟାନାମଗ୍ରେ ଦ୍ରବିଣମଦନିଃସଂଜ୍ଞମନସାଂ
କୃତଂ ବୀତବ୍ରୀଡ଼ୈର୍ନିଜଗୁଣକଥାପାତକମପି ॥୩୪॥

ଅନ୍ୱୟ—ଅସ୍ମାଭିଃ (ଆମ୍ଭେମାନେ) ତୁଳିତବିଶିନୀପତ୍ରପୟସାଂ (ପଦ୍ମପତ୍ରରେ ଟଳ ଟଳ ହେଉଥିବା ଜଳବିନ୍ଦୁପରି) ଅମୀଷାଂ ପ୍ରାଣାନାଂ କୃତେ (ଏହି ପ୍ରାଣ ପାଇଁ) ବିଗଳିତବିବେକୈଃ (ବିବେକକୁ ବିଳ ଦେଇ) କିଂ ନ ବ୍ୟବସିତଂ (କଣ ନ କରିଛୁ ?) ଦ୍ରବିଣମଦନିଃସଂଜ୍ଞମନସାଂ (ଧନ ଗର୍ବରେ ହିତାହିତ ଜ୍ଞାନ ରହିତ) ଆଢ଼୍ୟାନାମ୍ ଅଗ୍ରେ (ଧନୀମାନଙ୍କ ଆଗରେ) ବୀତବ୍ରୀଡ଼ୈଃ (ଅତି ନିର୍ଲଜ୍ଜ ଆମେ) ନିଜଗୁଣକଥାପାତକମ୍ ଅପି କୃତମ୍ (ନିଜର ଗୁଣ ପ୍ରଶଂସାଜନିତ ପାପ ମଧ୍ଯ କଲୁ) ।

ଅର୍ଥ—ପଦ୍ମପତ୍ରରେ ଟଳଟଳ ହେଉଥିବା ଜଳବିନ୍ଦୁ ପରି ଚଞ୍ଚଳ ଏହି ଜୀବନ ପାଇଁ ବିବେକକୁ ବିଳଦେଇ ଆମେ କଣ କଣ ଯେ ନକରିଛୁ ତାହା ପ୍ରକାଶ କରିହେବ ନାହିଁ । ସେଇଥିପାଇଁ ଅତି ନିର୍ଲଜ୍ଜ ଭାବରେ ଆମେ, ଧନ ଗର୍ବରେ ଅନ୍ଧ ହୋଇଥିବା ଲୋକଙ୍କ ଆଗରେ ଆତ୍ମପ୍ରଶଂସା ରୂପକ ପାପମଧ କରିବାକୁ ପଶ୍ଚାତ୍ପଦ ହେଲୁନାହିଁ ।

ଭ୍ରାତଃ କଷ୍ଟମହୋ ମହାନ୍‌ସ ନୃପତି ସାମନ୍ତଚକ୍ରଂ ଚ ତତ୍
ପାର୍ଶ୍ୱେ ତସ୍ୟ ଚ ସାପି ରାଜପରିଷତ୍ତାଶ୍ଚନ୍ଦ୍ରବିମ୍ବାନନାଃ ।
ଉଦ୍ରିକ୍ତଃ ସ ଚ ରାଜପୁତ୍ରନିବହସ୍ତେ ବନ୍ଦିନସ୍ତାଃ କଥାଃ
ସର୍ବଂ ଯସ୍ୟ ବଶାଦଗାତ୍‌ସ୍ମୃତିପଦଂ କାଳାୟ ତସ୍ମୈ ନମଃ ॥୩୪॥

ଅନ୍ୱୟ—ଭ୍ରାତଃ (ହେ ଭାଇ !) ଅହୋ କଷ୍ଟମ୍ (ଅହୋ କଷ୍ଟଜନକ) ଯସ୍ୟ ବଶାତ୍ (ଯାହା ଯୋଗୁଁ) ମହାନ୍ ସଃ ନୃପତିଃ (ସେହି ମହାନ୍ ରାଜା) ସାମନ୍ତଚକ୍ରଂ ଚ (ସାମନ୍ତ ରାଜନ୍ୟବର୍ଗ ମଧ୍ୟ) ତସ୍ୟ ପାର୍ଶ୍ୱେ (ତାଙ୍କ ପାଖରେ) ସା ରାଜପରିଷତ୍ (ସେହି ପଣ୍ଡିତ ମଣ୍ଡିତ ରାଜସଭା) ଅପି ଚ ଚନ୍ଦ୍ରବିମ୍ବାନନାଃ (ଚନ୍ଦ୍ରବଦନା ରମଣୀଗଣ ମଧ୍ୟ) ଉଦ୍ରିକ୍ତଃ (ଉଚ୍ଛୃଙ୍ଖଳ) ସଃ ରାଜପୁତ୍ରନିବହଃ (ସେହି ରାଜପୁତ୍ରମାନେ) ତେ ବନ୍ଦିନଃ (ସେହି ସ୍ତୁତିପାଠକମାନେ) ତାଃ କଥାଃ (ସଭାରେ ଆଲୋଚିତ ରସାଳ ଆଲୋଚନା) ସର୍ବଂ ସ୍ମୃତିପଦଂ (ସବୁକିଛି ସ୍ମୃତିପଥକୁ) ଅଗାତ୍ (ଆସୁଛି, ଆସିଛି) ତସ୍ମୈ କାଳାୟ ନମଃ (ସେହି କାଳକୁ ନମସ୍କାର) ।

ଅର୍ଥ—ହେ ଭାଇ ! ଯେଉଁ କାଳର ବଶୀଭୂତ ହୋଇ ସେହି ମହାନ୍ ନରପତି, ତାଙ୍କର ସୁବିସ୍ତୃତ ରାଜ୍ୟ, ସାମନ୍ତ, ରାଜନ୍ୟବର୍ଗ, ରାଜପରିଷତ୍, କବି ପଣ୍ଡିତ ମଣ୍ଡିତ ରାଜସଭା, ଚନ୍ଦ୍ରମୁଖୀ ସୁନ୍ଦରୀ ଯୁବତୀଗଣ, ପ୍ରବଳ ପରାକ୍ରମଶାଳୀ ରାଜପୁତ୍ର ସମୂହ ଓ ସୁନ୍ଦର ମନୋରଞ୍ଜକ କଥା କହୁଥିବା ସ୍ତୁତିପାଠକମାନେ ବିଳୟ ଲାଭକରି କେବଳ ସ୍ମୃତିର ବିଷୟ ହୋଇ ରହିଗଲେ, ସେହି କାଳକୁ ନମସ୍କାର ।

ବୟଂ ଯେଭ୍ୟୋ ଜାତାଶ୍ଚିରମପଗତା ଏବ ଖଳୁ ତେ
ସମଂ ଯୈଃ ସମ୍ବୃଦ୍ଧାଃ ସ୍ମୃତିବିଷୟତାଂ ତେଽପି ଗମିତାଃ ।
ଇଦାନୀମେତେ ସ୍ମଃ ପ୍ରତିଦିବସମାସନ୍ନପତନା
ଗତାସ୍ତୁଲ୍ୟାବସ୍ଥାଂ ସିକତିଳନଦୀତୀରତରୁଭିଃ ॥୩୫॥

ଅନ୍ୱୟ—ବୟଂ ଖଳୁ (ଆମେ ନିଶ୍ଚିତଭାବେ) ଯେଭ୍ୟଃ ଜାତାଃ (ଯାହାଙ୍କଠାରୁ ଜନ୍ମହେଲୁ) ତେ ଚିରମ୍ ଅପଗତାଃ ଏବ (ସେମାନେ ଚିରଦିନ ପାଇଁ ବିଦାୟ ନେଲେଣି) ଯୈଃ ସମଂ (ଯେଉଁମାନଙ୍କ ସହିତ) ସମ୍ବୃଦ୍ଧାଃ (ବଡ଼ ହୋଇଥିଲୁ) ତେ ଅପି ସ୍ମୃତିବିଷୟତାଂ ଗମିତାଃ (ସେମାନେ ବି ସ୍ମୃତିର ବିଷୟ ହେଲେଣି) ଇଦାନୀଂ (ବର୍ତ୍ତମାନ) ପ୍ରତିଦିନମ୍ ଆସନ୍ନ-ପତନାଃ (ପ୍ରତିଦିନ ମୃତ୍ୟୁ ଆଡ଼କୁ ଅଗ୍ରସର ହେଉଥିବା) ସିକତିଲନଦୀତୀର-ତରୁଭିଃ (ବାଲିଆ ନଦୀ କୂଳରେ ଥିବା ବୃକ୍ଷ ସହିତ) ତୁଲ୍ୟାବସ୍ଥାଂ ଗତାଃ (ସମାନ ଅବସ୍ଥା ଲାଭ କରିଥିବା) ଏତେ ବୟଂ ସ୍ମଃ (ଏଇ ଆମେ କେତେଜଣ ଅଛୁ) ।

ଅର୍ଥ—ଯେଉଁମାନେ ଆମକୁ ଜନ୍ମ ଦେଇଥିଲେ ସେମାନେ ମୃତ୍ୟୁବରଣ କରିସାରିଲେଣି । ଯେଉଁମାନଙ୍କ ସହିତ ଖେଳିବୁଲି ବଡ଼ହୋଇଥିଲୁ ସେମାନେ ଆଜି ସ୍ମୃତିର ବିଷୟ ହେଲେଣି । ବର୍ତ୍ତମାନ ଆମେ ବାଲୁକାମୟ ନଦୀତୀରରେ ଥିବା ଆସନ୍ନ-ପତନୋନ୍ମୁଖ ବୃକ୍ଷର ଅବସ୍ଥା ଲାଭକରି ମୃତ୍ୟୁକୁ ହିଁ ଅପେକ୍ଷାକରି ରହିଛୁ ।

ଯତ୍ରାନେକାଃ କ୍ୱଚିଦପି ଗୃହେ ତତ୍ର ତିଷ୍ଠତ୍ୟଥୈକୋ
ଯତ୍ରାପ୍ୟେକସ୍ତଦନୁ ବହବସ୍ତତ୍ର ଚାନ୍ତେ ନ ଚୈକଃ ।
ଇତ୍ଥଂ ଚେମୌ ରଜନିଦିବସୌ ଦୋଳୟନ୍ଦ୍ୱାବିବାକ୍ଷୌ
କାଳଃ କାଲ୍ୟା ସହ ବହୁକଳଃ କ୍ରୀଡ଼ତି ପ୍ରାଣିସାରୈଃ ॥୩୭॥

ଅନ୍ୱୟ—କାଳଃ (ସମୟ) ଇତ୍ଥଂ (ଏହିପରି) ଯତ୍ର କ୍ୱଚିତ୍ ଅପି ଗୃହେ (କୌଣସି ଘରେ) ଅନେକାଃ (ଅନେକ ଲୋକ) ଅଥ ତତ୍ର ଗୃହେ (ପରେ ସେହି ଘରେ) ଏକଃ ତିଷ୍ଠତି (ଜଣେ ଥାଏ) ଯତ୍ର ଏକଃ (ଯେଉଁଠି ଜଣେ ଥାଏ) ତଦନୁ ଅପି ବହବଃ (ତା'ପରେ ଅନେକ ମଧ୍ୟ ରହନ୍ତି) ତତ୍ର ଅନ୍ତେ ଚ ନ ଏକଃ (ସେଠାରେ ଶେଷରେ ଜଣେ ବି ନଥାଏ) ଇମୌ ରଜନିଦିବସୌ (ଏହି ଦିନରାତିକୁ) ଦ୍ୱୌ ଅକ୍ଷୌ ଇବ ଦୋଳୟନ (ଦୁଇଟି ପଶାକାଠି ପରି ଗଡ଼େଇ, ଏପାଖ ସେପାଖ ବଦଳାଇ) ପ୍ରାଣିସାରୈଃ (ପ୍ରାଣୀମାନଙ୍କୁ ସାରି ବା

ଗୋଟି କରି) ବହୁକଳାଃ (ବିଶିଷ୍ଟ କ୍ରୀଡ଼ାବତ୍ ରୂପେ) କାଳ୍ୟା ସହ (କାଳୀଙ୍କ ସହିତ) କ୍ରୀଡ଼ତି (ଖେଳୁଛି)।

ଅର୍ଥ—ଯେଉଁ ଘରେ ଏକ ସମୟରେ ଅନେକ ଥାଆନ୍ତି ପରବର୍ତ୍ତୀ ସମୟରେ ସେଠାରେ ଜଣେ ଥାଏ। ପୁଣି ଯେଉଁଠି ଜଣେ ଥାଏ, ପରେ ସେଠାରେ ଅନେକ ଏକାଠି ହୁଅନ୍ତି ଏବଂ ଶେଷରେ ସେଠାରେ ଜଣେ ବି ରହେ ନାହିଁ। କଳାବିଦ୍ୟାରେ ସୁନିପୁଣ କାଳ ଏହିପରି ଦିନ ଓ ରାତି ରୂପକ ପଶାକାଠିକୁ ବାରମ୍ବାର ଗଡ଼େଇ ପ୍ରାଣୀମାନଙ୍କୁ ସାର (ଗୋଟି) କରି ଚଳାଇ ସୁଖଦାୟିନୀ କାଳୀଙ୍କ ସହିତ ପଶାଖେଳ ଖେଳୁଛନ୍ତି।

ତପସ୍ୟନ୍ତଃ ସନ୍ତଃ କିମଧିନିବସାମଃ ସୁରନଦୀଂ
ଗୁଣୋଦାରାନ୍ଦାରାନୁତ ପରିଚରାମଃ ସବିନୟମ୍।
ପିବାମଃ ଶାସ୍ତ୍ରୌଘାନୁତ ବିବିଧକାବ୍ୟାମୃତରସାନ୍
ନ ବିଦ୍ମଃ କିଂ କୁର୍ମଃ କତିପୟନିମେଷାୟୁଷି ଜନେ ॥୩୮॥

ଅନ୍ୱୟ—କତିପୟନିମେଷାୟୁଷି ଜନେ [ଅଳ୍ପ କେତୋଟି ନିମେଷ (ଆଖିପିଚୁଳା) ମାତ୍ର ଜୀବନକାଳ ମଧ୍ୟରେ] ତପସ୍ୟନ୍ତଃ ସନ୍ତଃ (ତପସ୍ୟା ଆଚରଣ କରି) ସୁରନଦୀଂ (ଗଙ୍ଗାକୂଳରେ) ଅଧିନିବସାମଃ କିମ୍ (ବାସକରିବା କି ?) ଉତ (ଅଥବା) ଗୁଣୋଦାରାନ୍ (ସୌନ୍ଦର୍ଯ୍ୟ ଚାତୁର୍ଯ୍ୟ ଗୁଣାଦିଯୁକ୍ତା) ଦାରାନ୍ (ପତ୍ନୀଙ୍କୁ) ସବିନୟଂ (ନମ୍ରତାର ସହିତ) ପରିଚରାମଃ (ସେବା କରିବା କି ?) ଉତ ଶାସ୍ତ୍ରୌଘାନ୍ (ଶାସ୍ତ୍ରସମୂହ ଅଥବା) ବିବିଧକାବ୍ୟାମୃତ-ରସାନ୍ (ବିବିଧ କାବ୍ୟର ଅମୃତମୟ ରସ) ପିବାମ କିମ୍ (ପିଇବା କି ?) କିଂ କୁର୍ମଃ (କଣ କରିବା) ଇତି ନ ବିଦ୍ମଃ (ତାହା ଜାଣିପାରୁ ନାହୁଁ)।

ଅର୍ଥ—ଜୀବନକାଳର ସ୍ୱଳ୍ପତା ପ୍ରତି ଦୃଷ୍ଟିଦେଇ ଆମେ ଗଙ୍ଗାନଦୀ କୂଳରେ ବସି ତପସ୍ୟା କରିବା କି ? ଅଥବା ବିନୟୀ ହୋଇ ଗୁଣବତୀ ସୁନ୍ଦରୀ ପତ୍ନୀଙ୍କୁ ଅନୁସରଣ କରିବା କି ? ବିବିଧ ଧର୍ମଶାସ୍ତ୍ର ଓ ଅର୍ଥଶାସ୍ତ୍ରର ଅଥବା କାବ୍ୟ ନାଟକାଦିର ଅମୃତମୟ ରସ ପାନକରି ଜୀବନକାଳ ଅତିବାହିତ କରିବା କି ? କଣ କରିବା ତାହା ଜାଣିପାରୁନାହୁଁ।

ଗଙ୍ଗାତୀରେ ହିମଗିରିଶିଳାବଦ୍ଧପଦ୍ମାସନସ୍ୟ
ବ୍ରହ୍ମଧ୍ୟାନାଭ୍ୟସନବିଧିନା ଯୋଗନିଦ୍ରାଂ ଗତସ୍ୟ ।
କିଂ ତୈର୍ଭାବ୍ୟଂ ମମ ସୁଦିବସୈର୍ଯତ୍ର ତେ ନିର୍ବିଶଙ୍କାଃ
କଣ୍ଡୂୟନ୍ତେ ଜରଠହରିଣାଃ ଶୃଙ୍ଗମଙ୍ଗେ ମଦୀୟେ ॥୩୯॥

ଅନ୍ୱୟ—ଗଙ୍ଗାତୀରେ (ଗଙ୍ଗାନଦୀ କୂଳରେ) ହିମଗିରିଶିଳାବଦ୍ଧପଦ୍ମା-ସନସ୍ୟ (ହିମାଳୟର ଶିଳାଖଣ୍ଡ ଉପରେ ପଦ୍ମାସନରେ ବସିଥିବା) ବ୍ରହ୍ମଧ୍ୟାନା-ଭ୍ୟସନବିଧିନା (ବ୍ରହ୍ମଙ୍କୁ ଧ୍ୟାନ କରିବା ନିମିତ୍ତ) ଯୋଗନିଦ୍ରାଂ ଗତସ୍ୟ (ସମାଧିସ୍ଥ ଥିବା) ମମ (ମୋର) ତୈଃ ସୁଦିବସୈଃ ଭାବ୍ୟଂ କିଂ (ସେହି ଦିନ-ଗୁଡ଼ିକ ବିଷୟରେ ଚିନ୍ତା କରିପାରିବି କି ?) ଯତ୍ର (ଯେବେ) ତେ ନିର୍ବିଶଙ୍କାଃ ଜରଠହରିଣାଃ (ସେହି ଭୟହୀନ ବୃଦ୍ଧ ମୃଗମାନେ) ମଦୀୟେ (ମୋ ଦେହରେ) ଶୃଙ୍ଗମଙ୍ଗେ କଣ୍ଡୂୟନ୍ତେ (ଶିଙ୍ଗକୁ ଘଷି କଣ୍ଡୁ ନିବାରଣ କରିବେ) ।

ଅର୍ଥ—ଗଙ୍ଗାନଦୀ କୂଳରେ ହିମାଳୟର ଶିଳାଖଣ୍ଡ ଉପରେ ପଦ୍ମାସନରେ ବସି ଯେତେବେଳେ ପରଂବ୍ରହ୍ମଙ୍କୁ ଧ୍ୟାନ କରିବା ପାଇଁ ମୁଁ ବିଧିପୂର୍ବକ ଆଖିବୁଜି ସମାଧିସ୍ଥ ହେବି ଏବଂ ନିର୍ଭୟ ହୋଇ ବୃଦ୍ଧ ମୃଗମାନେ ମୋ' ଦେହରେ ନିଜର ଶିଙ୍ଗକୁ ଘଷି କଣ୍ଡୁ ନିବାରଣ କରିବେ ସେହି ସୁଦିନଗୁଡ଼ିକ କେବେ ଆସିବ ?

ସ୍ଫୁରତ୍ସ୍ଫାରଜ୍ୟୋତ୍ସ୍ନାଧବଳିତତଳେ କ୍ୱାପି ପୁଳିନେ
ସୁଖାସୀନାଃ ଶାନ୍ତଧ୍ୱନିଷୁ ରଜନୀଷୁ ଦ୍ୟୁସରିତଃ ।
ଭବାଭୋଗୋଦ୍ୱିଗ୍ନାଃ ଶିବ ଶିବ ଶିବେତ୍ୟାର୍ତ୍ତବଚସଃ
କଦା ସ୍ୟାମାନନ୍ଦୋଦ୍‌ଗତବହୁଳବାଷ୍ପପ୍ଲୁତଦୃଶଃ ॥୪୦॥

ଅନ୍ୱୟ—ଦ୍ୟୁସରିତଃ (ଗଙ୍ଗା ନଦୀର) କ୍ୱାପି କ୍ୱାପି ସ୍ଫୁରତ୍‌ସ୍ଫାରଜ୍ୟୋତ୍ସ୍ନା-ଧବଳିତତଳେ ପୁଳିନେ (କେଉଁଠି ବା କୌଣସି ସ୍ୱଚ୍ଛ ଚନ୍ଦ୍ରାଲୋକରେ ଧବଳୀତ ତୀର ଭୂମିରେ) ଶାନ୍ତଧ୍ୱନିଷୁ ରଜନୀଷୁ (ନିସ୍ତରଙ୍ଗ ରାତ୍ରିରେ) ସୁଖାସୀନାଃ (ସୁଖରେ ଆସନସ୍ଥ ହୋଇ) ଭବାଭୋଗୋଦ୍ୱିଗ୍ନାଃ (ସଂସାର ଦୁଃଖ ହେତୁ

ଉଦ୍‌ବିଗ୍ନ ଚିତ୍ତହୋଇ) ଶିବ ଶିବ ଶିବ ଇତି ଆର୍ତ୍ତବଚ ସଃ (ଶିବ ଶିବ ବୋଲି ଜପ କରି) କଦା (କେବେ) ଆନନ୍ଦୋଦ୍‌ଗତବହୁଲବାଷ୍ପାପ୍ଲୁତଦୃଶଃ (ଆନନ୍ଦାଶ୍ରୁରେ ଆପ୍ଲୁତଦୃଷ୍ଟି) ସ୍ୟାମ୍ (ହେବୁ ?) ।

ଅର୍ଥ—ପୁଣ୍ୟତୋୟା ସୁରସରିତ୍ ଗଙ୍ଗାନଦୀର ଜ୍ୟୋତ୍ସ୍ନା ପ୍ଲାବିତ ତଟ-ଭୂମିର କୌଣସି ସ୍ଥାନରେ ନୀରବ ନିଶିଥରେ ବସି ସଂସାରଦୁଃଖରେ ବ୍ୟାକୁଳ ହୋଇ କେବେ ଶିବ ଶିବ ବୋଲି ଜପ କରି ଆନନ୍ଦାଶ୍ରୁଧାରାରେ ଆପ୍ଲୁତ-ନୟନ ହେବୁ ?

ଶିରଃ ଶାର୍ବଂ ସ୍ୱର୍ଗାତ୍ ପଶୁପତିଶିରସ୍ତଃ କ୍ଷିତିଧରଂ
ମହୀଧ୍ରାଦୁତ୍ତୁଙ୍ଗାଦବନିମବନେଶ୍ଚାପି ଜଳଧିମ୍ ।
ଅଧୋ ଧୋ ଗଙ୍ଗେୟଂ ପଦମୁପଗତା ସ୍ତୋକମଥବା
ବିବେକଭ୍ରଷ୍ଟାନାଂ ଭବତି ବିନିପାତଃ ଶତମୁଖଃ ॥୪୧॥

ଅନ୍ୱୟ—ଇୟଂ ଗଙ୍ଗା (ଏହି ଗଙ୍ଗା) ସ୍ୱର୍ଗାତ୍ ଶାର୍ବଂ ଶିରଃ (ପ୍ରଥମେ ଶିବଙ୍କ ମସ୍ତକରେ ପଡ଼ିଲେ) ପଶୁପତିଶିରସ୍ତଃ କ୍ଷିତିଧରଂ (ଶିବଙ୍କ ମସ୍ତକରୁ ହିମାଳୟରେ) ଉତ୍ତୁଙ୍ଗାତ୍ ମହୀଧ୍ରାତ୍ ଅବନିଂ (ଉଚ୍ଚ ଶିଖରରୁ ପୃଥିବୀକୁ) ଅବନେଃ ଚ ଅପି ଅଧୋଧଃ ଜଳଧିଂ (ପୃଥିବୀର ତଳକୁ ତଳକୁ ଯାଇ ସମୁଦ୍ରରେ) ଅଥବା ସ୍ତୋକଂ ପଦମ୍ ଉପଗତା (ଅଥବା ନିମ୍ନତମ ପଦକୁ ଲାଭକଲା) ବିବେକଭ୍ରଷ୍ଟାନାଂ (ବିଗ୍ରହୀନମାନଙ୍କର) ବିନିପାତଃ (ଅନର୍ଥ, ଅଧଃପତନ) ଶତମୁଖଃ ଭବତି (ନାନାପ୍ରକାରେ ଘଟିଥାଏ) ।

ଅର୍ଥ—ପୁଣ୍ୟତୋୟା ଗଙ୍ଗାନଦୀ ପ୍ରଥମେ ଯେପରି ସ୍ୱର୍ଗରୁ ଆସି ଶିବଙ୍କ ମସ୍ତକରେ ପଡ଼ିଲେ, ସେଠାରୁ ପୁଣି ହିମାଳୟ ପର୍ବତ ଉପରେ, ପର୍ବତର ଉଚ୍ଚ ଶିଖରରୁ ପୃଥିବୀ ଉପରେ ଏବଂ ଶେଷରେ ତଳକୁ ତଳକୁ ଗତିକରି ନିମ୍ନତମ ପ୍ରଦେଶ ମହାସାଗରରେ ଲୀନ ହୋଇଗଲେ, ସେହିପରି ବିବେକଭ୍ରଷ୍ଟ ହୋଇଯାଇଥିବା ଲୋକମାନଙ୍କର ନାନାପ୍ରକାର ଅଧଃପତନ ଘଟିଥାଏ ।

ଆଶା ନାମ ନଦୀ ମନୋରଥଜଳା ତୃଷ୍ଣାତରଙ୍ଗାକୁଳା
ରାଗଗ୍ରାହବତୀ ବିତର୍କବିହଗା ଧୈର୍ଯ୍ୟଦ୍ରୁମଧ୍ୱଂସିନୀ ।
ମୋହାବର୍ତ୍ତସୁଦୁସ୍ତରାତିଗହନା ପ୍ରୋତ୍ତୁଙ୍ଗଚିନ୍ତାତଟୀ
ତସ୍ୟାଃ ପାରଗତା ବିଶୁଦ୍ଧମନସୋ ନନ୍ଦନ୍ତି ଯୋଗୀଶ୍ୱରାଃ ॥୧୨॥

ଅନ୍ୱୟ—ଆଶା ନାମ ନଦୀ (ଆଶା ନାମ୍ନୀ ଯେଉଁ ନଦୀ ଅଛି) ମନୋରଥ-ଜଳା (ଅଭିଳାଷ ତା'ର ଜଳ) ତୃଷ୍ଣାତରଙ୍ଗାକୁଳା (ତୃଷ୍ଣା ରୂପକ ତରଙ୍ଗରେ ବ୍ୟାକୁଳ) ରାଗଗ୍ରାହବତୀ (ସେଥିରେ ଅନୁରାଗ ରୂପକ କୁମ୍ଭୀର ଅଛି) ବିତର୍କ-ବିହଗା (ବଗୁର, ଯୁକ୍ତିତର୍କ ହେଉଛି ତୀରବର୍ତ୍ତୀ ପକ୍ଷୀ) ଧୈର୍ଯ୍ୟଦ୍ରୁମଧ୍ୱଂସିନୀ (ଧୈର୍ଯ୍ୟରୂପକ ମହାଦ୍ରୁମକୁ ଭୂତଳଶାୟୀ କରିବାରେ ସମର୍ଥା) ମୋହାବର୍ତ୍ତ-ସୁଦୁସ୍ତର [ମୋହରୂପ ଆବର୍ତ୍ତ (ଭଉଁରି) ଥିବାରୁ ପାରିହେବାର ସମ୍ଭାବନା ରହିତା] ଅତିଗହନା (ଅତିଗଭୀରା) ପ୍ରୋତ୍ତୁଙ୍ଗଚିନ୍ତାତଟୀ (ଚିନ୍ତାରୂପକ ଅତି ଉଚ୍ଚ ତଟଯୁକ୍ତା) ବିଶୁଦ୍ଧମନସଃ (ଶୁଦ୍ଧଚେତା) ଯୋଗୀଶ୍ୱରାଃ (ଶ୍ରେଷ୍ଠଯୋଗୀ-ଗଣ) ତସ୍ୟାଃ ପାରଗତାଃ ନନ୍ଦନ୍ତି (ସେହି ଆଶାନଦୀକୁ ପାରହୋଇଯାଇ ଆନନ୍ଦରେ ରହନ୍ତି) ।

ଅର୍ଥ—ଆଶା ଆକାଙ୍‌କ୍ଷା ହେଉଛି ଏକ ନଦୀ । ଭୋଗବିଳାସ କରିବାର ଅଭିଳାଷ ସେହି ନଦୀର ଜଳସ୍ୱରୂପ । ତା'ର ତରଙ୍ଗ ହେଉଛି ତୃଷ୍ଣା । ସେଥିରେ ଆସକ୍ତି ଓ ଚିନ୍ତା ବା ବଗୁର ଯଥାକ୍ରମେ କୁମ୍ଭୀର ଓ ପକ୍ଷୀରୂପେ ବାସକରନ୍ତି । ସେହି ଆଶା ନଦୀ ଧୈର୍ଯ୍ୟରୂପକ ମହାଦ୍ରୁମକୁ ମଧ୍ୟ ନଷ୍ଟ କରିଦିଏ । ମୋହ, ଅହଙ୍କାର ପ୍ରଭୃତି ସେହି ନଦୀର ଆବର୍ତ୍ତ (ଭଉଁରି) ଓ ନାନାପ୍ରକାର ଦୁଶ୍ଚିନ୍ତା ହେଉଛି ତା'ର ଉଭୟ ପାର୍ଶ୍ୱବର୍ତ୍ତୀ ଅତ୍ୟୁଚ୍ଚ ତୀରଭୂମି । କେବଳ ବିଶୁଦ୍ଧଚିତ୍ତ ଶ୍ରେଷ୍ଠଯୋଗୀଗଣ ସେହି ଆଶାନଦୀ ପାରହୋଇ ବ୍ରହ୍ମାନନ୍ଦ ଅନୁଭବ କରନ୍ତି ।

ଆସଂସାରଂ ତ୍ରିଭୁବନମିଦଂ ଚିନ୍ୱତାଂ ତାତ ତାଦୃକ୍
ନୈବାସ୍ମାକଂ ନୟନ ପଦବୀଂ ଶ୍ରୋତ୍ରବର୍ତ୍ମାଗତୋ ବା ।

ଯୋଽୟଂ ଧତ୍ତେ ବିଷୟକରିଣୀଗାଢ଼ରୂଢ଼ାଭିମାନ -
କ୍ଷୀବସ୍ୟାନ୍ତଃକରଣକରିଣଃ ସଂଯମାଳାନଲୀଳାମ୍ ॥୪୩॥

ଅନ୍ୱୟ—ତାତ (ହେ ପୂଜ୍ୟ) ଆସଂସାରଂ (ସଂସାର ସୃଷ୍ଟି ହେବାଠାରୁ) ଇଦଂ ତ୍ରିଭୁବନଂ ତନ୍ୱତାଂ (ଏହି ତ୍ରିଭୁବନକୁ ବିସ୍ତୃତ କରୁଥିବା) ଅସ୍ମାକଂ (ଆମର) ତାଦୃକ୍ (ସେପରି ପୁରୁଷ) ନୟନପଦବୀଂ ଶ୍ରୋତ୍ରବର୍ତ୍ମ ବା ନୈବ ଆଗତଃ (ଦୃଷ୍ଟିଗୋଚର ବା ଶ୍ରୁତିଗୋଚର ହୋଇନାହିଁ) ଯଃ ଅୟଂ (ଯେଉଁ ବ୍ୟକ୍ତି) ବିଷୟକରିଣୀଗାଢ଼ରୂଢ଼ାଭିମାନକ୍ଷୀବସ୍ୟ (ବିଷୟରୂପକ ହସ୍ତିନୀର ଗାଢ଼ ଅଭିମାନରେ ମତ୍ତ) ଅନ୍ତଃକରଣକରିଣଃ (ଚିତ୍ତରୂପକ ହସ୍ତୀର) ସଂଯମାଳାନଲୀଳାଂ ଧତ୍ତେ (ନିୟନ୍ତ୍ରଣ ନିମିତ୍ତ ବନ୍ଧନକୌଶଳକୁ ଆଶ୍ରୟ କରିଛି) ।

ଅର୍ଥ—ହେ ସମ୍ମାନାସ୍ପଦ ବନ୍ଧୁଗଣ ! ସଂସାର ସୃଷ୍ଟି ହେଲା ଦିନଠାରୁ ଆଜିପର୍ଯ୍ୟନ୍ତ ଏହି ତ୍ରିଭୁବନରେ ବିଷୟବାସନାରୂପିଣୀ ହସ୍ତିନୀର ଅତ୍ୟନ୍ତ ଅଭିମାନରେ ମତ୍ତ ଚିତ୍ତରୂପକ ହସ୍ତୀକୁ ବଶୀଭୂତ କରିଥିବା ପୁରୁଷକୁ ଆମେ ବହୁତ ଖୋଜିଲୁଣି । କିନ୍ତୁ ଦୁଃଖର କଥା, ଏପର୍ଯ୍ୟନ୍ତ ସେପରି ଜିତେନ୍ଦ୍ରିୟ ପୁରୁଷ ଆମର ଦୃଷ୍ଟିଗୋଚର ହୋଇନାହାନ୍ତି କି ସେପରି କେହି ଥିବାର ଆମେ ଶୁଣିନାହୁଁ ।

ଯେ ବର୍ଦ୍ଧନ୍ତେ ଧନପତିପୁରଃ ପ୍ରାର୍ଥନାଦୁଃଖଭାଜୋ
ଯେ ଚାଲ୍ପତ୍ୱଂ ଦଧତି ବିଷୟାକ୍ଷେପପର୍ଯ୍ୟସ୍ତବୁଦ୍ଧେଃ ।
ତେଷାମନ୍ତଃ ସ୍ଫୁରିତହସିତଂ ବାସରାଣାଂ ସ୍ମରେୟଂ
ଧ୍ୟାନଚ୍ଛେଦେ ଶିଖରିକୁହରଗ୍ରାବଶଯ୍ୟାନିଷଣ୍ଣଃ ॥୪୪॥

ଅନ୍ୱୟ—ଶିଖରିକୁହରଗ୍ରାବଶଯ୍ୟାନିଷଣ୍ଣଃ (ପର୍ବତ ଗୁମ୍ଫାର ପ୍ରସ୍ତର ଶଯ୍ୟାରେ ବସି ମୁଁ) ଧ୍ୟାନଚ୍ଛେଦେ (ଧ୍ୟାନଶେଷରେ) ଯେ ଧନପତିପୁରଃ ପ୍ରାର୍ଥନାଦୁଃଖଭାଜଃ (ଯେଉଁ ଦିନଗୁଡ଼ିକ ଧନିକମାନଙ୍କ ଆଗରେ ପ୍ରାର୍ଥନା କରିବାର ଦୁଃଖରେ) ବର୍ଦ୍ଧନ୍ତେ (ବଢ଼ିଯାଉଥିଲା) ବିଷୟାକ୍ଷେପପର୍ଯ୍ୟସ୍ତବୁଦ୍ଧେଃ

(ବିଷୟବାସନାରେ ବିପର୍ଯ୍ୟସ୍ତ ଚିତ୍ତ ବ୍ୟକ୍ତିର) ଯେ ଚ ଅଲବ୍ଧଂ ଦଧତ (ଯେଉଁ ଧନଗୁଡ଼ିକ ଶ୍ରେଷ୍ଠ ହୋଇଯାଉଥିଲା) ତେଷାଂ ବାସରାଣାଂ (ସେହି ଧନ-ଗୁଡ଼ିକର) ହୃଦ୍‌ଗତହସିତଂ (ହାସ୍ୟକର ଅବସ୍ଥାକୁ) ଅନ୍ୟଃ ସ୍ମରେସ୍ମମ୍ (ମନେ ମନେ ସ୍ମରଣ କରିବି) ।

ଅର୍ଥ—ଧନୀଲୋକଙ୍କ ପାଖରେ ଭିକ୍ଷା କରିବାକୁ ଯାଇ ଯେଉଁମାନେ ଦୀନତା ପ୍ରକାଶ କରନ୍ତି ଏବଂ ଭୋଗବିଳାସରେ ଆସକ୍ତ ହେବାରୁ ଯେଉଁମାନଙ୍କର ଅଧଃପତନ ଘଟେ ସେମାନଙ୍କ ଦୁଃଖ ଓ ହାସ୍ୟକର ଅବସ୍ଥାକୁ ମୁଁ ନିର୍ଜନ ପର୍ବତଗୁମ୍ଫାର କୌଣସି ଶିଳାଖଣ୍ଡ ଉପରେ ବସି ଅଭୀଷ୍ଟ ଦେବତାଙ୍କ ଧ୍ୟାନ ଶେଷରେ ମନେମନେ ସ୍ମରଣ କରିବି ।

ବିଦ୍ୟା ନାଧିଗତା କଳଙ୍କରହିତା ବିତ୍ତଂ ଚ ନୋପାର୍ଜିତଂ
ଶୁଶ୍ରୂଷାପି ସମାହିତେନ ମନସା ପିତ୍ରୋର୍ନ ସମ୍ପାଦିତା ।
ଆଲୋଲାୟତଲୋଚନା ଯୁବତୟଃ ସ୍ୱପ୍ନେଽପି ନାଲିଙ୍ଗିତାଃ
କାଲୋଽୟଂ ପରପିଣ୍ଡଲୋଲୁପତୟା କାକୈରିବ ପ୍ରେରିତଃ ॥୪୫॥

ଅନ୍ୱୟ—କଳଙ୍କରହିତାଃ ବିଦ୍ୟାଃ (ସନ୍ଦେହରହିତ ପୁରାଣନ୍ୟାୟାଦି ବିଦ୍ୟା) ନ ଅଧିଗତାଃ (ଅଧ୍ୟୟନ କଲି ନାହିଁ) ବିତ୍ତଂ ଚ ନ ଉପାର୍ଜିତଂ (ଧନ ମଧ୍ୟ ଉପାର୍ଜନ କରିପାରିଲି ନାହିଁ) ସମାହିତେନ ମନସା (ଏକାଗ୍ର ଚିତ୍ତରେ) ପିତ୍ରୋଃ (ପିତାମାତାଙ୍କର) ଶୁଶ୍ରୂଷା ଅପି ନ ସମ୍ପାଦିତା (ସେବା ମଧ୍ୟ ସମ୍ପାଦନ କଲି ନାହିଁ) ସ୍ୱପ୍ନେ ଅପି (ସ୍ୱପ୍ନରେ ମଧ୍ୟ) ଆଲୋଲାୟତଲୋଚନାଃ ଯୁବତୟଃ (ସୁଦୀର୍ଘନୟନା ଯୁବତୀମାନଙ୍କୁ) ନ ଆଲିଙ୍ଗିତାଃ (ଆଲିଙ୍ଗନ କଲିନାହିଁ) ଅୟଂ କାଲଃ (ସାରାଜୀବନ) ପରପିଣ୍ଡଲୋଲୁପତୟା (ପରାନ୍ନଭୋଜନ ଲୋଭରେ) କାକୈଃ ଇବ ପ୍ରେରିତଃ (କୁଆ ପରି କଟାଇ ଦେଲି) ।

ଅର୍ଥ—ଜୀବନରେ ପୁରୁଷାର୍ଥସାଧକ ପୁରାଣ ନ୍ୟାୟାଦି ଶାସ୍ତ୍ର ଅଧ୍ୟୟନ କଲି ନାହିଁ । ଧନ ଉପାର୍ଜନ କରିପାରିଲି ନାହିଁ । ଏକାଗ୍ରଚିତ୍ତରେ ପିତା-ମାତାଙ୍କର ସେବାକଲି ନାହିଁ କି ଆୟତଲୋଚନା ଯୁବତୀର ଆଲିଙ୍ଗନ ସୁଖ

ଭୋଗ କଲୁ ନାହିଁ । କିନ୍ତୁ କୁଆପରି ପରାନ୍ନଭୋଜନ ଲୋଭରେ ସାରାଜୀବନ ବୃଥାରେ କଟିଗଲା ।

ବିତୀର୍ଣ୍ଣେ ସର୍ବସ୍ୱେ ତରୁଣକରୁଣାପୂର୍ଣ୍ଣହୃଦୟାଃ
ସ୍ମରନ୍ତଃ ସଂସାରେ ବିଗୁଣପରିଣାମା ବିଧିଗତୀଃ ।
ବୟଂ ପୁଣ୍ୟେଽରଣ୍ୟେ ପରିଣତଶରଚ୍ଚନ୍ଦ୍ରକିରଣେ
ତ୍ରିୟାମା ନେଷ୍ୟାମୋ ହରଚରଣଚିନ୍ତୈକଶରଣାଃ ॥୪୬॥

ଅନ୍ୱୟ—ବୟଂ (ଆମେ) ତରୁଣକରୁଣାପୂର୍ଣ୍ଣହୃଦୟାଃ (କରୁଣାପୂର୍ଣ୍ଣ ହୃଦୟ ହୋଇ) ସର୍ବସ୍ୱେ ବିତୀର୍ଣ୍ଣେ (ସର୍ବସ୍ୱ ଦାନ କରିବା ପରେ) ସଂସାରେ (ସଂସାରରେ) ବିଗୁଣପରିଣାମାଃ (ଦୁଃଖମୟ ପରିଣତି) ବିଧିଗତୀଃ (କର୍ମଫଳ) ସ୍ମରନ୍ତଃ (ସ୍ମରଣ କରି) ପରିଣତଶରଚ୍ଚନ୍ଦ୍ରକିରଣେ (ଉଜ୍ଜ୍ୱଳ ଚନ୍ଦ୍ରକିରଣରେ) ପୁଣ୍ୟେ ଅରଣ୍ୟେ (ପବିତ୍ର ବନଭୂମିରେ) ହରଚରଣଚିନ୍ତୈକଶରଣାଃ (ହୃଦୟରେ ମହାଦେବଙ୍କ ଚରଣକୁ ଶରଣରୂପେ ନେଇ, ମନରେ ମହାଦେବଙ୍କ ଚରଣକୁ ସ୍ମରଣ କରି) ତ୍ରିୟାମା (ରାତ୍ରି) ନେଷ୍ୟାମଃ (ଅତିବାହିତ କରିବା) ।

ଅର୍ଥ—କରୁଣାପୂର୍ଣ୍ଣ ହୃଦୟରେ ସମସ୍ତ ଧନସମ୍ପଦ ଦାନକରିଦେଇ ଓ ସଂସାରରେ କର୍ମଫଳର ଦୁଃଖମୟ ପରିଣତି କଥା ସ୍ମରଣ କରି, ପବିତ୍ର ତପୋବନରେ ଏକାଗ୍ରଚିତ୍ତ ହୋଇ ମହାଦେବଙ୍କ ଚରଣକମଳ ଧ୍ୟାନପୂର୍ବକ କେବେ ପୂର୍ଣ୍ଣଚନ୍ଦ୍ରର ଜ୍ୟୋତ୍ସ୍ନାରେ ପ୍ଲାବିତ ରାତ୍ରିଗୁଡ଼ିକ ଅତିବାହିତ କରିବି ?

ବୟମିହ ପରିତୁଷ୍ଟା ବଲ୍କଲୈସ୍ତ୍ୱଂ ଚ ଲକ୍ଷ୍ମ୍ୟା
ସମ ଇହ ପରିତୋଷୋ ନିର୍ବିଶେଷୋ ବିଶେଷଃ ।
ସ ତୁ ଭବତି ଦରିଦ୍ରୋ ଯସ୍ୟ ତୃଷ୍ଣା ବିଶାଳା
ମନସି ଚ ପରିତୁଷ୍ଟେ କୋଽର୍ଥବାନ୍ କୋ ଦରିଦ୍ରଃ ॥୪୭॥

ଅନ୍ୱୟ—ଇହ ବୟଂ (ଏହି ସଂସାରରେ ଆମେ) ବଲ୍କଲୈଃ ପରିତୁଷ୍ଟାଃ (ବୃକ୍ଷର ବଲ୍କଲ ପିନ୍ଧି ସନ୍ତୁଷ୍ଟ ଅଛୁ) ତ୍ୱଂ ଚ ଲକ୍ଷ୍ମ୍ୟା (ତୁମେ ଲକ୍ଷ୍ମୀ ବା

ଧନସମ୍ପଦ ପାଇ ସନ୍ତୁଷ୍ଟ ଅଛ) ଇହ (ଆମ ଦୁହିଁଙ୍କଠାରେ) ପରିତୋଷଃ ସମଃ (ସନ୍ତୋଷ ସମାନ) ବିଶେଷଃ ନିର୍ବିଶେଷଃ (ଉଭୟ ପ୍ରକାର ସନ୍ତୋଷରେ ବିଶେଷ ପାର୍ଥକ୍ୟ ନାହିଁ) ସଃ ତୁ ଦରିଦ୍ରଃ (ସେ କିନ୍ତୁ ଦରିଦ୍ର) ଯସ୍ୟ ବିଶାଳା ତୃଷ୍ଣା ଭବତି (ଯାହାର ବିଶେଷ ଲୋଭ ଅଛି) ମନସି ଚ ପରିତୁଷ୍ଟେ (ମନରେ ସନ୍ତୋଷ ଆସିଲେ) କଃ ଅର୍ଥବାନ୍ (କିଏ ଧନୀ) କଃ ଦରିଦ୍ରଃ (କିଏ ଦରିଦ୍ର, କାରଣ ଧନୀ ଓ ଦରିଦ୍ର ଏକ ମାନସିକ କଳ୍ପନାମାତ୍ର) ।

ଅର୍ଥ—ହେ ରାଜନ୍ ! ଆମେ ବଲ୍କଲ ପରିଧାନ କରି ସନ୍ତୁଷ୍ଟ ଥିଲାବେଳେ ଆପଣ ପର୍ଯ୍ୟାପ୍ତ ଧନସମ୍ପଦର ଅଧିକାରୀ ହୋଇ ସନ୍ତୋଷ ଲାଭ କରୁଛନ୍ତି । ଆମ ଉଭୟଙ୍କର ସନ୍ତୋଷ ସମସ୍ଥାନୀୟ । ସେହି ସନ୍ତୋଷରେ ବିଶେଷ ପାର୍ଥକ୍ୟ ନାହିଁ । କିନ୍ତୁ ଯେ ଅତ୍ୟଧିକ ଧନଲୋଭୀ ସେ ହେଉଛି ପ୍ରକୃତ ଦରିଦ୍ର । ମନରେ ସନ୍ତୋଷ ଥିଲେ ଧନୀ ଓ ଦରିଦ୍ର ଅବସ୍ଥା ଏକ ମାନସିକ କଳ୍ପନା ରୂପେ ପ୍ରତୀତ ହୁଏ ।

ଯଦେତତ୍ସ୍ୱାଚ୍ଛନ୍ଦ୍ୟଂ ବିହରଣମକାର୍ପଣ୍ୟମଶନଂ
ସହାର୍ଯ୍ୟୈଃ ସଂବାସଃ ଶ୍ରୁତମୁପଶମୈକବ୍ରତଫଳମ୍ ।
ମନୋ ମନ୍ଦସ୍ପନ୍ଦଂ ବହିରପି ଚିରସ୍ୟାପି ବିମୃଶନ୍
ନ ଜାନେ କସ୍ୟୈଷା ପରିଣତିରୁଦାରସ୍ୟ ତପସଃ ।।୭୮।।

ଅନ୍ୱୟ—ଯତ୍ ଏତତ୍ ସ୍ୱାଚ୍ଛନ୍ଦ୍ୟ ବିହରଣଂ (ଏଇ ଯେ, ନିଜ ଇଚ୍ଛାରେ ସ୍ୱାଧୀନଭାବରେ ଭ୍ରମଣ କରିବା) ଅକାର୍ପଣ୍ୟଂ ଭୋଜନଂ (କାହା ପାଖରେ ଦୀନତା ପ୍ରକାଶ ନକରି ଭୋଜନ କରିବା) ଆର୍ଯ୍ୟୈଃ ସହ ସଂବାସଃ (ସଜ୍ଜନମାନଙ୍କ ଗହଣରେ ରହିବା) ଉପଶମୈକବ୍ରତଫଳଂ ଶ୍ରୁତଂ (ଶାନ୍ତିମୟ ବ୍ରତ ସମ୍ବନ୍ଧରେ ଅଧ୍ୟୟନ କରିବା) ବହିଃ ଅପି ମନଃ ମନ୍ଦସ୍ପନ୍ଦଂ (ବିଷୟବାସନା ବିଷୟରେ ଅନାକୃଷ୍ଟମନହୋଇ ରହିବା) କସ୍ୟ ଉଦାରସ୍ୟ ତପସଃ (କେଉଁ ମହତ୍ ତପସ୍ୟାର) ଏଷା ପରିଣତିଃ (ଏହି ଫଳ) ଚିରସ୍ୟ ଅପି ବିମୃଶନ୍ (ବହୁକାଳ ଧରି ଚିନ୍ତାକରି ମଧ୍ୟ) ନ ଜାନେ (ଜାଣିପାରୁ ନାହିଁ) ।

ଅର୍ଥ—ସ୍ୱାଧୀନଭାବରେ ବିଚରଣ, ଅଯାଚିତ ଭୋଜନ, ସଜ୍ଜନମାନଙ୍କ ଗହଣରେ ଅବସ୍ଥାନ, ମନ ଓ ପ୍ରାଣକୁ ଶାନ୍ତି ପ୍ରଦାନ କରୁଥିବା ଶାସ୍ତ୍ର ଅଧ୍ୟୟନ ଓ ବିଷୟବାସନା ପ୍ରତି ଅନାକୃଷ୍ଟ ଚିତ୍ତ ହୋଇ ରହିବା, କେଉଁ ମହତ୍ ତପସ୍ୟାର ଫଳ, ତାହା ବହୁକାଳ ଧରି ଚିନ୍ତାକଲେ ମଧ୍ୟ ଆମେ ଜାଣିପାରୁ ନାହୁଁ ।

ପାଣିଃ ପାତ୍ରଂ ପବିତ୍ରଂ ଭ୍ରମଣପରିଗତଂ ଭୈକ୍ଷ୍ୟମକ୍ଷୟ୍ୟମନ୍ନଂ
ବିସ୍ତୀର୍ଣ୍ଣଂ ବସ୍ତ୍ରମାଶାଦଶକମଚପଳଂ ତଳ୍ପମସ୍ୱଳ୍ପମୁର୍ବୀ ।
ଯେଷାଂ ନିଃସଙ୍ଗତାଙ୍ଗୀକରଣପରିଣତସ୍ୱାନ୍ତସନ୍ତୋଷିଣସ୍ତେ
ଧନ୍ୟାଃ ସଂନ୍ୟସ୍ତଦୈନ୍ୟବ୍ୟତିକରନିକରାଃ କର୍ମ ନିର୍ମୂଳୟନ୍ତି ॥୪୯॥

ଅନ୍ୱୟ—ଯେଷାଂ ପାଣିଃ ପବିତ୍ରଂ ପାତ୍ରଂ (ଯେଉଁମାନଙ୍କର କରତଳ ପବିତ୍ର ପାତ୍ର) ଭ୍ରମଣ ପରିଗତଂ (ବୁଲି ବୁଲି ପାଇଥିବା) ଭୈକ୍ଷ୍ୟମ୍ ଅନ୍ନମ୍ ଅକ୍ଷୟ୍ୟଂ (ଭିକ୍ଷାନ୍ନ ସନ୍ତୋଷପ୍ରଦ) ବିସ୍ତୀର୍ଣ୍ଣଂ (ବିସ୍ତୃତ) ଅଚପଳଂ (ନିର୍ମଳ) ଆଶାଦଶକଂ (ଦଶଦିଗ) ବସ୍ତ୍ରଂ (ପରିଧାନ) ଉର୍ବୀ (ପୃଥିବୀ) ଅସ୍ୱଳ୍ପଂ (ଅମୂଲ୍ୟ) ତଳ୍ପଂ (ଶଯ୍ୟା) ନିଃସଙ୍ଗତାଙ୍ଗୀକରଣପରିଣତସ୍ୱାନ୍ତସନ୍ତୋଷିଣଃ (ନିର୍ଜନତା ସ୍ୱୀକାରଦ୍ୱାରା ସନ୍ତୁଷ୍ଟଚିତ୍ତ) ସଂନ୍ୟସ୍ତଦୈନ୍ୟବ୍ୟତିକରନିକରାଃ (ସବୁବିଧ ଦୀନତା ଓ ନୀଚତାକୁ ପରିହାର କରିବାରେ ସମର୍ଥ) ତେ ଧନ୍ୟାଃ (ସେହି ଧନ୍ୟବାଦାର୍ହ ପୁରୁଷଗଣ) କର୍ମ ନିର୍ମୂଳୟନ୍ତି (ଶୁଭାଶୁଭକର୍ମଜନିତ ଫଳକୁ ବିନାଶ କରିପାରନ୍ତି) ।

ଅର୍ଥ—ଯେଉଁମାନଙ୍କର ହସ୍ତହିଁ ଭୋଜନପାତ୍ର, ସ୍ୱାଧୀନଭାବେ ଭ୍ରମଣକରି ପାଇଥିବା ଭିକ୍ଷାଲବ୍ଧ ଦ୍ରବ୍ୟରେ ଯେଉଁମାନେ ଜୀବନଧାରଣ କରନ୍ତି, ସୁବିସ୍ତୃତ ଦଶଦିଗ ଯାହାର ପରିଧାନ ଅର୍ଥାତ ଯେଉଁମାନେ ଦିଗମ୍ବର, ସୁବିଶାଳ ଭୂତଳହିଁ ଯାହାର ଶଯ୍ୟା, ନିର୍ଜନତା ସ୍ୱୀକାରଦ୍ୱାରା ଯେଉଁମାନେ ସନ୍ତୁଷ୍ଟଚିତ୍ତ, ଦୀନତାଜନିତ ସମସ୍ତ ସମ୍ପଦକୁ ଯେଉଁମାନେ ତ୍ୟାଗ କରିଛନ୍ତି, ସେହିମାନେହିଁ ଧନ୍ୟବାଦାର୍ହ । ସେହି ଧନ୍ୟ ପୁରୁଷମାନେ ଶୁଭାଶୁଭକର୍ମଜନିତ ଫଳ ଧ୍ୱଂସ କରିବାରେ ସମର୍ଥ ହୁଅନ୍ତି ।

ଦୁରାରାଧ୍ୟାଃ ସ୍ୱାମୀ ତୁରଗଚଳଚିତ୍ତାଃ କ୍ଷିତିଭୁଜୋ
ବୟଂ ତୁ ସ୍ଥୂଳେଚ୍ଛାଃ ସୁମହତି ପଦେ ବଦ୍ଧମନସଃ ।
ଜରା ଦେହଂ ମୃତ୍ୟୁର୍ହରତି ଦୟିତଂ ଜୀବିତମିଦଂ
ସଖେ ନାନ୍ୟଚ୍ଛ୍ରେୟୋ ଜଗତି ବିଦୁଷୋଽନ୍ୟତ୍ର ତପସଃ ॥୫୦॥

ଅନ୍ୱୟ—ସ୍ୱାମୀ ଦୁରାରାଧ୍ୟାଃ (ପ୍ରଭୁଙ୍କ ସେବାରେ ସନ୍ତୁଷ୍ଟ କରିହୁଏ ନାହିଁ) କ୍ଷିତିଭୁଜଃ ତୁରଗଚଳଚିତ୍ତାଃ (ରାଜା ଅଥବା ଶାସକମାନେଅଶ୍ୱପରି ଚଞ୍ଚଳମନା) ବୟଂ ତୁ ସ୍ଥୂଳେଚ୍ଛାଃ (ଆମେ ମଧ୍ୟ ବହୁ ଧନସମ୍ପଦ ପାଇବାରେ ଅଭିଳାଷୀ) ସୁମହତି ପଦେ ବଦ୍ଧମନସଃ (ଅତି ଉଚ୍ଚ ପଦପଦବୀ ପାଇବା ପାଇଁ ସତତ ତତ୍ପର) ଜରା ଦେହଂ ହରତି (ଜରା ଦେହକୁ ନାଶ କରୁଛି) ମୃତ୍ୟୁଃ ଇଦଂ ଦୟିତଂ ଜୀବିତଂ ହରତି (ମୃତ୍ୟୁ ଅତି ପ୍ରିୟ ଜୀବନକୁ ବିନାଶ କରୁଛି) ସଖେ (ହେ ମିତ୍ର !) ବିଦୁଷଃ ତପସଃ (ବିବେକୀ ପୁରୁଷର ତପସ୍ୟାର) ଅନ୍ୟତ୍ର (ତପସ୍ୟା ବିନା) ଅନ୍ୟତ୍ ଶ୍ରେୟଃ ନ (ଅନ୍ୟ କୌଣସି କଲ୍ୟାଣକର ବସ୍ତୁ ନାହିଁ) ।

ଅର୍ଥ—ଅଶ୍ୱପରି ଚଞ୍ଚଳମନା ରାଜା ବା ଶାସକମାନଙ୍କ ସେବାଦ୍ୱାରା ସନ୍ତୁଷ୍ଟ କରିବା ସମ୍ଭବ ନୁହେଁ । ଆମେ ମଧ୍ୟ ପ୍ରଚୁର ଧନସମ୍ପଦ ପାଇବା ପାଇଁ ବ୍ୟାକୁଳ । କିନ୍ତୁ ଯାହାପାଇଁ ଏ ସେବା ଓ ଧନସମ୍ପଦ ଆବଶ୍ୟକ, ସେହି ଦେହକୁ ବାର୍ଦ୍ଧକ୍ୟ ଓ ପରମପ୍ରିୟ ପ୍ରାଣକୁ ମୃତ୍ୟୁ କବଳିତ କରିଥାଏ । ତେଣୁ ହେ ବନ୍ଧୁ ! ଏ ଜଗତରେ ତପସ୍ୟା କରିବା ବ୍ୟତୀତ ବିବେକୀ ବ୍ୟକ୍ତି ପକ୍ଷରେ ଅନ୍ୟ କୌଣସି କଲ୍ୟାଣକର ମାର୍ଗ ନାହିଁ ।

ଭୋଗା ମେଘବିତାନମଧ୍ୟବିଲସତ୍ସୌଦାମିନୀ ଚଞ୍ଚଳା
ଆୟୁର୍ବାୟୁବିଘଟ୍ଟିତାଭ୍ରପଟଳୀଲୀନାମ୍ବୁବଦ୍ଭଙ୍ଗୁରମ୍ ।
ଲୋଲା ଯୌବନଲାଳନା ତନୁଭୃତାମିତ୍ୟାକଳଯ୍ୟ ଦ୍ରୁତଂ
ଯୋଗେ ଧୈର୍ଯ୍ୟସମାଧିସିଦ୍ଧିସୁଲଭେ ବୁଦ୍ଧିଂ ବିଦଧ୍ୱଂବୁଧାଃ ॥୫୧

ଅନ୍ୱୟ—ତନୁଭୃତାଂ (ଦେହଧାରୀମାନଙ୍କର) ଭୋଗାଃ (ବିଷୟବାସନା) ମେଘବିତାନବିଳସତ୍‌ସୌଦାମିନୀ ଚଞ୍ଚଳା (ମେଘରେ ସ୍ଫୁରିତ ହେଉଥିବା ବିଦ୍ୟୁତ୍ ପରି ଚଞ୍ଚଳ) ଆୟୁଃ (ଜୀବନକାଳ) ବାୟୁବିଘଟ୍ଟିତାଭ୍ରପଟଳୀଲୀନା-ମ୍ବୁବତ୍ ଭଙ୍ଗୁରଂ (ବାୟୁ ଆଘାତରେ ମେଘରେ ଲୀନ ହୋଇଯାଉଥିବା ଜଳବିନ୍ଦୁ ପରି ଅଳ୍ପକାଳସ୍ଥାୟୀ) ଯୌବନଲଲନା (ଯୌବନ ଧାରଣା) ଲୋଲା (ଚପଳ) ଇତି ଆକଳଯ୍ୟ (ଏସବୁ କଥା ବିଚାରକରି) ବୁଧାଃ (ହେ ପଣ୍ଡିତଗଣ) ଦ୍ରୁତଂ (ଶୀଘ୍ର) ଧୈର୍ଯ୍ୟସମାଧିସିଦ୍ଧିସୁଲଭେ (ଧୈର୍ଯ୍ୟ, ସମାଧି ଓ ସିଦ୍ଧିପ୍ରାପ୍ତିର ସହଜ ଉପାୟରୂପେ ଅଭିହିତ) ଯୋଗେ ବୁଦ୍ଧିଂ ବିଦଧ୍ୱମ୍ (ଯୋଗରେ ମନ ଦିଅ) ।

ଅର୍ଥ—ମଣିଷର ଭୋଗ୍ୟ ବିଷୟ ମେଘମାଳା ମଧ୍ୟରେ ପ୍ରକାଶିତ ବିଦ୍ୟୁତ୍ ପରି ଚଞ୍ଚଳ, ତା'ର ଆୟୁଷ ବାୟୁ ଆନ୍ଦୋଳିତ ମେଘପଟଳରେ ଲୀନ ହୋଇ-ଯାଉଥିବା ଜଳବିନ୍ଦୁ ସଦୃଶ ଅସ୍ଥିର ଓ ଯୌବନକାଳୋଚିତ ସୁଖଲାଳସା ଅତି ଚଞ୍ଚଳ—ଏହି ସବୁ କଥା ଚିନ୍ତାକରି ହେ ପଣ୍ଡିତଗଣ ! ଯଥାଶୀଘ୍ର ଏକାଗ୍ରଚିତ୍ତ ହୋଇ ଧୈର୍ଯ୍ୟ, ସମାଧି ଓ ସିଦ୍ଧିପ୍ରାପ୍ତିର ସହଜପନ୍ଥା ରୂପେ ଅଭିହିତ ପରଂବ୍ରହ୍ମ ଧ୍ୟାନରେ ମନୋନିବେଶ କର ।

ପୁଣ୍ୟେ ଗ୍ରାମେ ବନେ ବା ମହତି ସିତପଟଚ୍ଛନ୍ନପାଳୀଂ କପାଳୀ-
ମାଦାୟ ଜ୍ଞାନଗର୍ଭଦ୍ୱିଜହୁତହୁତଭୁଗ୍‌ଧୂମଧୂମ୍ରୋପକଣ୍ଠମ୍ ।
ଦ୍ୱାରଂ ଦ୍ୱାରଂ ପ୍ରବୃତ୍ତୋ ବରମୁଦରଦରୀପୂରଣାୟ କ୍ଷୁଧାର୍ତ୍ତୋ
ମାନୀ ପ୍ରାଣୀ ସ ଧନ୍ୟୋ ନ ପୁନରନୁଦିନଂ ତୁଲ୍ୟକୁଲ୍ୟେଷୁ ଦୀନଃ ॥୫୨॥

ଅନ୍ୱୟ—ମାନୀ ପ୍ରାଣୀ (ଅହଙ୍କାରୀ ମଣିଷ) କ୍ଷୁଧାର୍ତ୍ତଃ (ଭୋକିଲା ହୋଇ) ଉଦରପୂରଣାୟ (ପେଟ ପୂରାଇବା ପାଇଁ) ପୁଣ୍ୟେ (ପବିତ୍ର କ୍ଷେତ୍ରରେ) ଗ୍ରାମେ (ଲୋକବସତିରେ) ବା ମହତିବନେ (ଅଥବା ବିଶାଳ ତପୋବନରେ) ସିତପଟଚ୍ଛନ୍ନପାଳୀଂ କପାଳୀମ୍ ଆଦାୟ (ଶ୍ୱେତ ବସ୍ତ୍ରରେ ଆଚ୍ଛାଦିତ ଲାଉ-ତୁମ୍ବା ପ୍ରଭୃତି ଧରି) ଜ୍ଞାନଗର୍ଭଦ୍ୱିଜହୁତହୁତଭୁଗ୍‌ଧୂମଧୂମ୍ରୋପକଣ୍ଠଂ (ଯଜ୍ଞାଗ୍ନି ଧୂମରେ ଧୂଆଁଳିଆ ଦେଖାଯାଉଥିବା ଜ୍ଞାନୀ ବ୍ରାହ୍ମଣ ମାନଙ୍କ) ଦ୍ୱାରଂ ଦ୍ୱାରଂ

ତ୍ୱତ୍ତଃ (ପ୍ରତି ଦ୍ୱାରଦେଶକୁ ଯାଇ) ଅନୁଦିନଂ (ପ୍ରତିଦିନ) ପୁନଃ ତୁଲ୍ୟ କୁଳେଷୁ ନ ଦୀନଃ (ପୁଣି ସ୍ୱଜାତିସ୍ଥ ବ୍ରାହ୍ମଣମାନଙ୍କର କୃପାପାତ୍ର ହୁଏନାହିଁ) ସଃ ବରଂ ଧନ୍ୟଃ (ସେ ଯଥାର୍ଥରେ ଶ୍ରେଷ୍ଠ ଓ ଧନ୍ୟବାଦାର୍ହ) ।

ଅର୍ଥ—ସମସ୍ତ ଶାସ୍ତ୍ର ପାରଦର୍ଶୀ ବ୍ରାହ୍ମଣମାନଙ୍କ ଆହୁତ ଦ୍ୱାରା ଯଜ୍ଞାଗ୍ନିରୁ ଉଠୁଥିବା ଧୂମରେ ଆଚ୍ଛାଦିତ ପବିତ୍ର ବିଶାଳ ଗ୍ରାମ ବା ବନରେ କ୍ଷୁଧାର୍ତ୍ତ ହୋଇ ଉଦରପୂର୍ତ୍ତି ନିମିତ୍ତ ଯେଉଁ ବ୍ୟକ୍ତି ଶୁଭ୍ରବସ୍ତ୍ରରେ ଆବୃତ ଭିକ୍ଷାପାତ୍ର ଧରି ପ୍ରତ୍ୟେକ ଗୃହଦ୍ୱାରରେ ପ୍ରତିଦିନ ଭିକ୍ଷାକରେ ଓ ସେହି ଭିକ୍ଷାନ୍ନରେ ଜୀବନ ଧାରଣ କରେ, ତାର ଜୀବନ ଧନ୍ୟ । କିନ୍ତୁ ପ୍ରତିଦିନ ନିଜ ବଂଶର ଆତ୍ମୀୟ ସ୍ୱଜନଙ୍କଠାରେ ପ୍ରତିଦିନ ଦୀନତା ପ୍ରକାଶ କରିବା ଆଦୌ ଶ୍ରେୟସ୍କର ନୁହେଁ ।

ଚଣ୍ଡାଳଃ କିମୟଂ ଦ୍ୱିଜାତିରଥବା ଶୂଦ୍ରୋଽଥ କିଂ ତାପସଃ
କିଂବା ତତ୍ତ୍ୱନିବେଶପେଶଲମତିର୍ଯୋଗୀଶ୍ୱରଃ କୋଽପି କିମ୍ ।
ଇତ୍ୟୁତ୍ପନ୍ନବିକଳ୍ପଜଳ୍ପମୁଖରୈଃ ସଂଭାଷ୍ୟମାନା ଜନୈ-
ର୍ନ କ୍ରୁଦ୍ଧା ପଥିନୈବ ତୁଷ୍ଟମନସୋ ଯାନ୍ତି ସ୍ୱୟଂ ଯୋଗିନଃ ॥୫୩॥

ଅନ୍ୱୟ—ଉତ୍ପନ୍ନବିକଳ୍ପଜଳ୍ପମୁଖରୈଃ ଜନୈଃ (ତର୍କପରାୟଣ ଦୁର୍ମୁଖ ବ୍ୟକ୍ତିମାନଙ୍କ ଦ୍ୱାରା) ଅୟଂ ଚଣ୍ଡାଳଃ କିଂ (ଏ କଣ ଚଣ୍ଡାଳ ?) ଅଥବା ଦ୍ୱିଜାତିଃ (ଅଥବା ବ୍ରାହ୍ମଣ କି ?) ଅଥ ଶୂଦ୍ରଃ (ଶୂଦ୍ର କି ?) ତାପସଃ କିଂ (ତପସ୍ୱୀ କି ?) କିମ୍ବା ତତ୍ତ୍ୱନିବେଶପେଶଲମତିଃ କଃ ଅପି ଯୋଗୀଶ୍ୱରଃ କିଂ (ଅଥବା ତତ୍ତ୍ୱଦର୍ଶୀ କୌଣସି ମୁନି କି ?) ଇତି -ସମ୍ଭାଷ୍ୟମାନା ଯୋଗିନଃ (ଏହିପରି ଶୁଣୁଥିବାବେଳେ ଯୋଗୀମାନେ) ନ କ୍ରୁଦ୍ଧାଃ ନ ଏବ ତୁଷ୍ଟମନସଃ (କ୍ରୋଧ ନକରି କି ସନ୍ତୁଷ୍ଟ ନହୋଇ) ପଥି ସ୍ୱୟଂ ଯାନ୍ତି (ନିଜ ବାଟରେ ଚାଲିଯାଆନ୍ତି) ।

ଅର୍ଥ—ଏ କଣ ଚଣ୍ଡାଳ ? ଅଥବା ବ୍ରାହ୍ମଣ, ଶୂଦ୍ର, ତପସ୍ୱୀ ଅଥବା ତତ୍ତ୍ୱଦର୍ଶୀ କୌଣସି ମହାପୁରୁଷ ? ଏହିପରି ନାନାପ୍ରକାର ସନ୍ଦେହ ପୋଷଣ

କରୁଥିବା ଲୋକମାନଙ୍କ କଥାବାର୍ତ୍ତାରେ ସନ୍ତୁଷ୍ଟ ବା ବିରକ୍ତ ନହୋଇ ଯୋଗୀମାନେ ସ୍ୱଚ୍ଛନ୍ଦରେ ନିଜବାଟରେ ଚାଲିଯାଆନ୍ତି ।

ଏତସ୍ମାଦ୍‌ବିରମେନ୍ଦ୍ରିୟାର୍ଥଗହନାଦାୟାସକାଦାଶ୍ରୟ
ଶ୍ରେୟୋ ମାର୍ଗମଶେଷଦୁଃଖଶମନବ୍ୟାପାରଦକ୍ଷଂ କ୍ଷଣାତ୍ ।
ଶାନ୍ତଂ ଭାବମୁପୈହି ସଂତ୍ୟଜ ନିଜାଂ କଲ୍ଲୋଳଲୋଳାଂ ଗତିଂ
ମା ଭୂୟୋ ଭଜ ଭଙ୍ଗୁରାଂ ଭବରତିଂ ଚେତଃ ପ୍ରସୀଦାଧୁନା ॥୬୪॥

ଅନ୍ୱୟ—ଚେତଃ (ରେ ମନ !) ଏତସ୍ମାତ୍ ଆୟାସକାତ୍ ଇନ୍ଦ୍ରିୟାର୍ଥ-ଗହନାତ୍ ବିରମ (ଆୟାସସାଧ୍ୟ ଏହି ଇନ୍ଦ୍ରିୟସୁଖକର ବିଷୟବାସନାରୁ ବିରତ ହୁଅ) କ୍ଷଣାତ୍ ଅଶେଷଦୁଃଖଶମନବ୍ୟାପାରଦକ୍ଷଂ (କ୍ଷଣକ ମଧ୍ୟରେ ସମସ୍ତ ଦୁଃଖଦୂର କରିବାରେ ସମର୍ଥ) ଶ୍ରେୟଃ ମାର୍ଗମ୍ ଆଶ୍ରୟ (ଶ୍ରେୟ ଅର୍ଥାତ୍ ପୁଣ୍ୟ ମାର୍ଗ ଆଶ୍ରୟ କର) ଶାନ୍ତଂ ଭାବମ୍ ଉପୈହି (ଶାନ୍ତଭାବ ପୋଷଣ କର) ନିଜାଂ କଲ୍ଲୋଳଲୋଳାଂ ଗତିଂ ସଂତ୍ୟଜ (ନିଜର ଜଳତରଙ୍ଗ ପରି ଚଞ୍ଚଳ ସ୍ୱଭାବ ତ୍ୟାଗ କର) ଭୂୟଃ ଭଂଗୁରାଂ ଭବରତିଂ ମା ଭଜ (ପୁଣି କ୍ଷଣସ୍ଥାୟୀ ସଂସାର ସୁଖପ୍ରତି ଆସକ୍ତ ହୁଅନାହିଁ) ଅଧୁନା ପ୍ରସୀଦ (ବର୍ତ୍ତମାନ ପ୍ରସନ୍ନ ହୋଇ ରହ) ।

ଅର୍ଥ—ରେ ମନ ! ଅତୀବ ଦୁଃଖଦାୟକ ବିଷୟାସକ୍ତିଠାରୁ ଦୂରେଇ ରହ ସମସ୍ତ ଦୁଃଖର ବିନାଶକ ଜ୍ଞାନମାର୍ଗ ଆଶ୍ରୟ କର । ଆତ୍ମାର ସ୍ୱରୂପ ଅନୁ-ସନ୍ଧାନରେ ତତ୍ପର ହୁଅ । ସର୍ବଦା ଶାନ୍ତଭାବ ପୋଷଣ କର । ଜଳର କଲ୍ଲୋଳ ପରି ଅତି ଚଞ୍ଚଳ ସ୍ୱଭାବ ତ୍ୟାଗ କର । କ୍ଷଣସ୍ଥାୟୀ ସଂସାରସୁଖ ଅଭିଳାଷକୁ ଜଳାଞ୍ଜଳି ଦେଇ ବର୍ତ୍ତମାନ ପ୍ରସନ୍ନ ହୋଇ ରହ ।

ପୁଣ୍ୟୈର୍ମୂଳଫଳୈଃ ପ୍ରିୟୈଃ ପ୍ରଣୟିନୀଂ ବୃତ୍ତିଂ କୁରୁଷ୍ୱାଧୁନା
ଭୂଶଯ୍ୟା ନବପଲ୍ଲବୈରକରୁଣୈରୁତ୍ତିଷ୍ଠ ଯାମୋ ବନମ୍ ।
କ୍ଷୁଦ୍ରାଣାମବିବେକମୂଢ଼ମନସାଂ ଯତ୍ରେଶ୍ୱରାଣାଂ ସଦା
ବିତ୍ତବ୍ୟାଧିବିକାରବିହ୍ୱଳଗିରାଂ ନାମାପି ନ ଶ୍ରୂୟତେ ॥୬୫॥

ଅନ୍ୱୟ—ତ୍ୱମ୍ ଉତ୍ତିଷ୍ଠ (ରେ ମନ ! ତୁ ଉଠ୍) ବନଂ ଯାମଃ (ବଣକୁ ଯିବା) ଅଧୁନା (ଏବେ) ପ୍ରିୟୈଃ ପୁଣ୍ୟୈଃ ମୂଳଫଳୈଃ (ପ୍ରିୟ ଓ ପବିତ୍ର ଫଳମୂଳ ସହିତ) ପ୍ରଣୟିନୀଂ ବୃତ୍ତିଂ କୁରୁଷ୍ୱ (ସ୍ନେହ ବ୍ୟବହାର କର) ଅକରୁଣୈଃ (ସ୍ୱେଚ୍ଛା ପ୍ରାପ୍ତ) ତୃଣଦଲ୍‌କଲୈଃ ଭୂଶଯ୍ୟାବୃତ୍ତିଂ କୁରୁଷ୍ୱ (ତୃଣ ଓ ବଲ୍‌କଲ ପରିଧାନ ସହିତ ଭୂଶଯ୍ୟା ପ୍ରତି ସ୍ନେହ କର) ଯତ୍ର ସଦା (ସର୍ବଦା ଯେଉଁଠି) କ୍ଷୁଦ୍ରାଣାଂ (କଦର୍ଯ୍ୟ) ଅବିବେକମୂଢ଼ମନସାଂ (ବିଗ୍ରସ୍ତମନ) ଈଶ୍ୱରାଣାଂ (ପ୍ରଭୁ-ମାନଙ୍କର) ବିତ୍ତବ୍ୟାଧିବିକାରବିହ୍ୱଲଗିରାଂ (ଧନଗର୍ବରେ ମତ୍ତ ଲୋକଙ୍କର ବିକୃତ କଥାର ନାମ ଅପି ନ ଶ୍ରୂୟତେ (ନାମମଧ୍ୟ ଶୁଣାଯାଏ ନାହିଁ) ।

ଅର୍ଥ—ରେ ମନ ! ଏଥର ଉଠ୍, ବନକୁ ଯିବା । ଆଉ ବିଳମ୍ବ କଲେ କିଛି ଲାଭ ହେବନାହିଁ । ଏବେ ବଣର ପ୍ରିୟ ଓ ପବିତ୍ର ଫଳମୂଳ ପ୍ରତି ପ୍ରୀତି ପୋଷଣ କର । ଅନାୟାସରେ ଉପଲବ୍ଧ ହେଉଥିବା ତୃଣ ବଲ୍‌କଲର ପରିଧାନ ଓ ଭୂତଳ ଶେଯକୁ ସ୍ନେହ କର । କାରଣ ସେହି ବନରେ ଅବିବେକ, ମୂଢ଼, ନୀଚ ଓ ଧନରୂପକ ବ୍ୟାଧିରେ ଆକ୍ରାନ୍ତ ହୋଇଥିବାରୁ ବିକୃତବୁଦ୍ଧି ବ୍ୟକ୍ତିମାନଙ୍କର ନାମ ମଧ୍ୟ ଶୁଣାଯାଏ ନାହିଁ ।

> ମୋହଂ ମାର୍ଜୟ ତାମୁପାର୍ଜୟ ରତିଂ ଚନ୍ଦ୍ରାର୍ଦ୍ଧଚୂଡ଼ାମଣୌ
> ଚେତଃ ସ୍ୱର୍ଗତରଙ୍ଗିଣୀତଟଭୁବାମାସଙ୍ଗମଙ୍ଗୀକୁରୁ ।
> କୋବା ବୀଚିଷୁ ବୁଦ୍‌ବୁଦେଷୁ ଚ ତଡ଼ିଲ୍ଲେଖାସୁ ଚ ସ୍ତ୍ରୀଷୁ ଚ
> ଜ୍ୱାଳାଗ୍ରେଷୁ ଚ ପନ୍ନଗେଷୁ ଚ ସୁହୃଦ୍‌ବର୍ଗେଷୁ ଚ ପ୍ରତ୍ୟୟଃ ॥୫୭॥

ଅନ୍ୱୟ—ଚେତଃ (ରେ ମନ !) ମୋହଂ ମାର୍ଜୟ (ମୋହ ତ୍ୟାଗକର) ଚନ୍ଦ୍ରାର୍ଦ୍ଧଚୂଡ଼ାମଣୌ (ଚନ୍ଦ୍ରଶେଖର ଶିବଙ୍କଠାରେ) ତାଂ ରତିମ୍ ଉପାର୍ଜୟ (ପରମାନନ୍ଦଦାୟିନୀ ପ୍ରୀତିପୋଷଣ କର) ସ୍ୱର୍ଗତରଙ୍ଗିଣୀତଟଭୁବାଂ (ଗଙ୍ଗା-ତୀରବର୍ତ୍ତୀ ସ୍ଥାନ ସହିତ) ଆସଙ୍ଗମ୍ ଅଙ୍ଗୀକୁରୁ (ସମ୍ପର୍କ ସ୍ଥାପନ କର) ବୀଚିଷୁ (ତରଙ୍ଗରେ) ବୁଦ୍‌ବୁଦେଷୁ ଚ (ପାଣିଫୋଟକା) ତଡ଼ିଲ୍ଲେଖାସୁ ସ୍ତ୍ରୀଷୁ ଚ (ବିଦ୍ୟୁତ୍ ଓ ସ୍ତ୍ରୀଠାରେ ମଧ୍ୟ) ଜ୍ୱାଳାଗ୍ରେଷୁ ପନ୍ନଗେଷୁ ଚ (ଅଗ୍ନିଜ୍ୱାଳାରେ

ସର୍ପରେ ମଧ୍ୟ) ଯୁବତିଦ୍ୱବର୍ଗେଷୁ ଚ (କପଟୀବଂଧୁମାନଙ୍କଠାରେ) କଃ ପ୍ରତ୍ୟୟଃ (କି ବିଶ୍ୱାସ ?) ।

ଅର୍ଥ—ରେ ମନ ! ଧନସମ୍ପଦ ପ୍ରଭୃତି ମୋହ ତ୍ୟାଗକର । ଚଂଦ୍ର-ଶେଖର ମହାଦେବଙ୍କ ଚରଣ ସ୍ମରଣ କର । ଗଙ୍ଗାତଟରେ ବାସକରିବା ପାଇଁ ସ୍ଥିର କର । କାରଣ, ଜଳର ତରଙ୍ଗ, ଜଳବୁଦ୍‌ବୁଦ (ଫୋଟକା), ବିଦ୍ୟୁତ୍‌ଲତା, ସ୍ତ୍ରୀ, ଅଗ୍ନିଶିଖା, ବିଷଧର ସର୍ପ ଓ କପଟୀ ବଂଧୁମାନଙ୍କଠାରେ କି ବିଶ୍ୱାସ ଅଛି ?

ଅଗ୍ରେ ଗୀତଂ ସରସକବୟଃ ପାର୍ଶ୍ୱତୋ ଦାକ୍ଷିଣାତ୍ୟାଃ
ପୃଷ୍ଠେଲୀଳାବଳୟରଣିତଂ ଚାମରଗ୍ରାହିଣୀନାମ୍ ।
ଯଦ୍ୟସ୍ତ୍ୟେବଂ କୁରୁ ଭବରସାସ୍ୱାଦନେ ଲମ୍ପଟତ୍ୱଂ
ନୋ ଚେଚ୍ଚେତଃ ପ୍ରବିଶ ସହସା ନିର୍ବିକଳ୍ପେ ସମାଧୌ ॥୫୬॥

ଅନ୍ୱୟ—ଚେତଃ (ରେ ମନ !) ଯଦି ଅଗ୍ରେ ଗୀତଂ (ଯଦି ଆଗରେ ଗାୟକମାନେ ଗୀତ ଗାଉଛନ୍ତି) ପାର୍ଶ୍ୱତଃ (ଉଭୟ ପାଖରେ) ଦାକ୍ଷିଣାତ୍ୟାଃ ସରସକବୟଃ (ଦକ୍ଷିଣୀ ରସିକ କବିମାନେ ଅଛନ୍ତି) ପୃଷ୍ଠେ (ପଛରେ) ଚାମର-ଗ୍ରାହିଣୀନାଂ (ଚାମର ଧାରିଣୀମାନଙ୍କର) ଲୀଳାବଳୟରଣିତଂ (କଙ୍କଣର ମଧୁର ଧ୍ୱନି ଶୁଭୁଛି) ଏବମ୍ ଅସ୍ତି (ଏସବୁ ଅଛି) ଭବରସାସ୍ୱାଦନେ (ସଂସାର ସୁଖଭୋଗରେ) ଲମ୍ପଟତ୍ୱଂ କୁରୁ (ନିମଜ୍ଜିତ ଲମ୍ପଟ ହୋଇଯା) ନୋଚେତ୍ (ନୋହିଲେ) ନିର୍ବିକଳ୍ପେ ସମାଧୌ (ନିର୍ବିକଳ୍ପ ସମାଧି ଯୋଗରେ) ସହସା ପ୍ରବିଶ (ଶୀଘ୍ର ପ୍ରବେଶ କର) ।

ଅର୍ଥ—ରେ ମନ ! ଯଦି ତୋ' ଆଗରେ ପ୍ରବୀଣ ଗାୟକ ଗୀତ ଗାଉଛି, ଦୁଇପାଖରେ ଦକ୍ଷିଣୀ କବିମାନେ ସରସ କବିତା ପଢ଼ି ଶୁଣାଉଛନ୍ତି ଏବଂ ପଛରେ ଅତି ରମଣୀୟା ଚାମରଧାରିଣୀ ରମଣୀମାନଙ୍କ କଙ୍କଣର ମଧୁର ଝଙ୍କାର ଶୁଭୁଛି ତେବେ ତୁ ସଂସାରରସ ଆସ୍ୱାଦନରେ ନିମଜ୍ଜିତ ହୋଇଯା । ନୋହିଲେ ନିର୍ବିକଳ୍ପ ସମାଧିଯୋଗରେ ଯଥାଶୀଘ୍ର ପ୍ରବେଶ କର ।

ବିରମତ ବୁଧା ଯୋଷିତ୍ସଙ୍ଗାତ୍ସୁଖାତ୍କ୍ଷଣଭଂଗୁରାତ୍
କୁରୁତ କରୁଣାମୈତ୍ରୀପ୍ରଜ୍ଞାବଧୂଜନସଙ୍ଗମମ୍ ।
ନ ଖଳୁ ନରକେ ହାରାକ୍ରାନ୍ତଂ ଘନସ୍ତନମଣ୍ଡଳଂ
ଶରଣମଥବା ଶ୍ରୋଣୀବିମ୍ବଂ ରଣନ୍ମଣିମେଖଳମ୍ ॥୬୮॥

ଅନ୍ୱୟ—ବୁଧାଃ (ହେ ପଣ୍ଡିତଗଣ) ଯୋଷିତ୍ସଙ୍ଗାତ୍ (ସ୍ତ୍ରୀ ସହବାସ ବା ସଙ୍ଗଜନିତ) କ୍ଷଣଭଂଗୁରାତ୍ ସୁଖାତ୍ (କ୍ଷଣିକ ଆନନ୍ଦଲାଭରୁ) ବିରମତ (ବିରତ ହୁଅ) କରୁଣାମୈତ୍ରୀପ୍ରଜ୍ଞାବଧୂଜନସଙ୍ଗମଂ କୁରୁତ (ଦୟା-ମିତ୍ରତା-ଶାସ୍ତ୍ରବୁଦ୍ଧିରୂପିଣୀବଧୂମାନଙ୍କ ସହିତ ସଙ୍ଗମ କର) ଖଳୁ ନରକେ (କାରଣ ନରକରେ) ହାରାକ୍ରାନ୍ତଂ ଘନସ୍ତନମଣ୍ଡଳଂ (ମୁକ୍ତାଦିହାରପରିଶୋଭିତ ଘନପୀନପୟୋଧର) ଶରଣଂ ନ (ରକ୍ଷକ ହେବ ନାହିଁ) ଅଥବା ରଣନ୍ମଣି-ମେଖଳଂ (ଅଥବା ଶବ୍ଦାୟମାନ ମେଖଳା ମଣ୍ଡିତ) ଶ୍ରୋଣୀବିମ୍ବଂ ଶରଣଂ ନ (ନିତମ୍ବବିମ୍ବ ବା ବିସ୍ତୃତ ଜଘନ ରକ୍ଷକ ହେବନାହିଁ) ।

ଅର୍ଥ—ହେ ପଣ୍ଡିତଗଣ ! ସ୍ତ୍ରୀ ସଂସର୍ଗଜନିତ କ୍ଷଣିକ ଆନନ୍ଦରୁ ନିବୃତ୍ତ ହୁଅ । ମୈତ୍ରୀ-କରୁଣା-ପ୍ରଜ୍ଞାରୂପିଣୀ ବଧୂମାନଙ୍କ ସହିତ ସଙ୍ଗମ କର । କାରଣ, ନରକରେ ଯେତେବେଳେ ଦଣ୍ଡ ପାଇବ, ସେତେବେଳେ ହାର-ମଣ୍ଡିତ ଯୁବତୀ ନାରୀ ସ୍ତନମଣ୍ଡଳ କି ଶବ୍ଦାୟମାନ ଚଂଦ୍ରାହାର ଶୋଭିତ ସ୍ଥୂଳ ନିତମ୍ବ ତୁମକୁ ରକ୍ଷା କରିପାରିବ ନାହିଁ ।

ପ୍ରାଣ୍ୟାଘାତାନ୍ନିବୃତ୍ତିଃ ପରଧନହରଣେ ସଂଯମଃ ସତ୍ୟବାକ୍ୟଂ
କାଳେ ଶକ୍ତ୍ୟା ପ୍ରଦାନଂ ଯୁବତିଜନକଥାମୂକଭାବଃ ପରେଷାମ୍ ।
ତୃଷ୍ଣାସ୍ରୋତୋ ବିଭଙ୍ଗୋ ଗୁରୁଷୁ ଚ ବିନୟଃ ସର୍ବଭୂତାନୁକମ୍ପା
ସାମାନ୍ୟଃ ସର୍ବଶାସ୍ତ୍ରେଷ୍ୱନୁପହତବିଧିଃ ଶ୍ରେୟସାମେଷ ପନ୍ଥାଃ ॥୬୯॥

ଅନ୍ୱୟ—ପ୍ରାଣ୍ୟାଘାତାତ୍ ନିବୃତ୍ତିଃ (ଜୀବହିଂସାରୁ ନିବୃତ୍ତ ହେବା) ପରଧନହରଣେ ସଂଯମଃ (ପରଧନହରଣ ନକରିବା) ସତ୍ୟବାକ୍ୟଂ (ସତ୍ୟ କହିବା) କାଳେ ଶକ୍ତ୍ୟା ପ୍ରଦାନଂ (ଯଥାସମୟରେ ଯଥାଶକ୍ତି ଦାନ କରିବା)

ପରେଷାଂ ଯୁବତିଜନକଥାମୂକଭାବଃ (ପରର ସ୍ତ୍ରୀସମ୍ବନ୍ଧୀୟ ଆଲୋଚନାରେ ମୌନବ ରହିବା) ତୃଷ୍ଣାସ୍ରୋତଃ ବିଭଙ୍ଗଃ (ଅଯଥା ଅଭିଳାଷ ପୋଷଣ ନକରିବା, ସନ୍ତୁଷ୍ଟ ରହିବା) ଗୁରୁଷୁ ଚ ବିନୟଃ (ଗୁରୁଜନଙ୍କଠାରେ ବିନୟଭାବ ପ୍ରକାଶ କରିବା) ସର୍ବଭୂତାନୁକମ୍ପା (ସମସ୍ତ ପ୍ରାଣୀଙ୍କଠାରେ ଦୟାଦୃଷ୍ଟି ଦେବା) ସର୍ବଶାସ୍ତ୍ରେଷୁ ଅନୁପହତଗତିଃ (ସମସ୍ତ ଶାସ୍ତ୍ରରେ ବର୍ଣ୍ଣିତ ମୁମୁକ୍ଷୁମାନଙ୍କ ଦ୍ୱାରା ଅନୁସୃତ) ଶ୍ରେୟସାଂ (କଲ୍ୟାଣର) ଏଷଃ ସାମାନ୍ୟଃ ପନ୍ଥାଃ (ଏହାହିଁ ସାଧାରଣ ମାର୍ଗରୂପେ ଅଭିହିତ) ।

ଅର୍ଥ—ବିଭିନ୍ନ ଶାସ୍ତ୍ରରେ ଜୀବହିଂସା ତ୍ୟାଗ, ପରଧନ ଅପହରଣ ନକରିବା, ସତ୍ୟ କହିବା, ଯଥାସମୟରେ ଶକ୍ତି ଅନୁସାରେ ଦାନ ଦେବା, ପରସ୍ତ୍ରୀ ବିଷୟକ ଆଲୋଚନା କ୍ଷେତ୍ରରେ ମୌନବ ରହିବା, ପ୍ରାଣୀମାନଙ୍କ ପ୍ରତି ସଦୟ ହେବା ଓ ତୃଷ୍ଣା ତ୍ୟାଗ କରି ସନ୍ତୁଷ୍ଟ ରହିବା ବିଷୟ ସମାନଭାବରେ ବର୍ଣ୍ଣିତ ହୋଇଛି । ଏ ସମସ୍ତ କଲ୍ୟାଣ ପ୍ରାପ୍ତିର ଶ୍ରେଷ୍ଠମାର୍ଗ ରୂପେ ଅଭିହିତ ।

ମାତର୍ଲକ୍ଷ୍ମି ଭଜସ୍ୱ କଂଚିଦପରଂ ମତ୍କାଙ୍କ୍ଷିଣୀ ମା ସ୍ମ ଭୂ-<br>
ର୍ଭୋଗେଭ୍ୟଃ ସ୍ପୃହୟାଳବସ୍ତବ ବଶାଃକା ନିସ୍ପୃହାଣାମସି ।<br>
ସଦ୍ୟଃ ସ୍ୟୂତପଲାଶପତ୍ରପୁଟିକାପାତ୍ରେ ପବିତ୍ରୀକୃତେ<br>
ଭିକ୍ଷାସକ୍ତୁଭିରେବ ସମ୍ପ୍ରତି ବୟଂ ବୃତ୍ତିଂ ସମୀହାମହେ ॥୬୦॥

ଅନ୍ୱୟ—ମାତଃ ଲକ୍ଷ୍ମି (ହେ ମା ଲକ୍ଷ୍ମୀ !) ଅପରଂ କଂଚିତ୍ (ଅନ୍ୟ କାହାକୁ) ଭଜସ୍ୱ (ସେବାକର) ମତ୍କାଙ୍କ୍ଷିଣୀ ମା ସ୍ମ ଭୂଃ (ମୋ'ଠାରେ ଆଶା ରଖ ନାହିଁ କି ମୋ' ପାଖକୁ ଆସନାହିଁ) ଭୋଗେଭ୍ୟଃ ସ୍ପୃହୟାଳବଃ ତବ ବଶାଃ (ଭୋଗବିଳାସ ପାଇଁ ଲାଳାୟିତ ଲୋକେ ତୁମ ବଶରେ ରହନ୍ତି) ନିସ୍ପୃହାଣାଂ କା ଅସି (ନିସ୍ପୃହମାନଙ୍କଠାରେ ତୁମର ଆବଶ୍ୟକତା ଆଦୌ ନାହିଁ) ସଂପ୍ରତି ବୟଂ (ବର୍ତ୍ତମାନ ଆମେ) ପବିତ୍ରୀକୃତେ ସଦ୍ୟଃସ୍ୟୂତପଲାଶ-ପତ୍ରପୁଟିକାପାତ୍ରେ (ପରିଷ୍କୃତ ଓ ସଦ୍ୟ ତୋଳା ହୋଇଥିବା ପଲାଶପତ୍ର ଦନାରେ) ଭିକ୍ଷାସକ୍ତୁଭିଃ (ଭିକ୍ଷାଲବ୍ଧଛତୁଦ୍ୱାରା) ବୃତ୍ତିଂ ସମୀହାମହେ (ଜୀବନ ନିର୍ବାହ କରିବା ପାଇଁ ଇଚ୍ଛା କରୁଛୁ) ।

ଅର୍ଥ—ହେ ମା ଲକ୍ଷ୍ମୀ ! ତୁ ଅନ୍ୟ କୌଣସି ଭାଗ୍ୟବାନ୍ ପ୍ରତି ଦୟାକର । ମୋତେ ଆଉ ଆଶା କରନା କି ମୋ'ପାଖକୁ ଆ'ନା । ବିଷୟାଭିଳାଷୀ ବ୍ୟକ୍ତିମାନେ ତୋର ବଶୀଭୂତ ହୁଅନ୍ତି । ଆମ ପାଖରେ ତୋର ଆବଶ୍ୟକତା ନାହିଁ । କାରଣ, ବର୍ତ୍ତମାନ ଆମେ ସଦ୍ୟଃ ତୋଳାହୋଇଥିବା ପରିଷ୍କୃତ ପଲାଶ ପତ୍ର ଦନାରେ ଥିବା ଭିକ୍ଷାଲବ୍ଧ ଛତୁରେ ଜୀବିକା ନିର୍ବାହ କରିବାରେ ଅଭିଳାଷୀ ହୋଇଛୁ ।

ଯୂୟଂ ବୟଂ ବୟଂ ଯୂୟମିତ୍ୟାସୀନ୍ମତିରାବୟୋଃ ।
କିଂ ଜାତମଧୁନା ଯେନ ଯୂୟଂ ଯୂୟଂ ବୟଂ ବୟମ୍ ॥୬୧॥

ଅନ୍ୱୟ—ଆବୟୋଃ (ଆମ ଦୁହିଁଙ୍କ ମଧ୍ୟରେ) ଯୂୟଂ ବୟଂ (ଆପଣମାନେହିଁ ଆମେ) ବୟଂ ଯୂୟଂ (ଆମେହିଁ ଆପଣମାନେ) ଇତି ମତିଃ ଆସୀତ୍ (ଏହି ବିଚାର ଥିଲା) ଅଧୁନା କିଂ ଜାତଂ (ବର୍ତ୍ତମାନ କଣ ହେଲା ?) ଯେନ ଯୂୟଂ ଯୂୟଂ (ଯାହା ଦ୍ୱାରା ଆପଣମାନେ ଆପଣହୋଇ ରହିଲେ) ବୟଂ ବୟଂ (ଆମେ ମଧ୍ୟ ଆମେ ହୋଇ ରହିଲୁ) ।

ଅର୍ଥ—ତୁମେ ଆମେ ଓ ଆମେ ତୁମେ ଭିତରେ କୌଣସି ଭେଦଭାବନା ନାହିଁ । ପ୍ରଥମେ ଆମର ଏହି ବିଚାର ଥିଲା । ବର୍ତ୍ତମାନ ଏପରି କଣ ନୂଆ ଘଟଣା ଘଟିଲା ଯେ ତୁମେ ତୁମେ ହେଲ ଏବଂ ଆମେ ଆମେ ହୋଇ ରହିଲୁ ? ସ୍ୱାର୍ଥସାଧନ ପାଇଁ ଏପରି ଘଟିଥାଏ ।

ରମ୍ୟଂ ହର୍ମ୍ମ୍ୟତଳଂ ନ କିଂ ବସତୟେ ଶ୍ରବ୍ୟଂ ନ ଗେୟାଦିକଂ
କିଂବା ପ୍ରାଣସମାସମାଗମସୁଖଂ ନୈବାଧିକଂ ପ୍ରୀତୟେ ।
କିଂ ତୂଦ୍‌ଭ୍ରାନ୍ତପତତ୍ପତଙ୍ଗପବନବ୍ୟାଲୋଲଦୀପାଙ୍କୁର-
ଛାୟାଚଞ୍ଚଳମାକଳଯ୍ୟ ସକଳଂ ସନ୍ତୋବନାନ୍ତଂ ଗତାଃ ॥୬୨॥

ଅନ୍ୱୟ—ରମ୍ୟଂ ହର୍ମ୍ମ୍ୟତଳଂ (ସୁନ୍ଦର ପ୍ରାସାଦ) କିଂ ବସତୟେ ନ (ବାସଯୋଗ୍ୟ ହେଲ ନାହିଁକି ?) ଶବ୍ୟଂ ଗେୟାଦିକଂ ନ (ଶ୍ରବଣୀୟ ଗୀତ, ନୃତ୍ୟାଦି ନଥିଲ କି ?) କିଂବା (ଅଥବା) ପ୍ରାଣସମାସମାଗମସୁଖଂ (ପ୍ରାଣପ୍ରିୟା

ରମଣୀମାନଙ୍କ ସହିତ ସମ୍ଭୋଗସୁଖ) ଅଧିକଂ ପ୍ରୀତୟେ ଏବ ନ (ଅଧିକ ଆନନ୍ଦପ୍ରଦ ହେଲ ନାହିଁକି ?) କିନ୍ତୁ ସକଳଂ (କିନ୍ତୁ ସମସ୍ତ ବସ୍ତୁକୁ) ଉଦ୍‌ଭ୍ରାନ୍ତପତଙ୍ଗପବନ ବ୍ୟାଲୋଲଦୀପାଙ୍କୁର ଚ୍ଛାୟା ଚଞ୍ଚଳମ୍ ଆକଳଯ୍ୟ (ଉଦ୍‌ଭ୍ରାନ୍ତ ହୋଇ ଉଡ଼ୁଥିବା ପତଙ୍ଗର ପକ୍ଷବାୟୁରେ ଚଞ୍ଚଳ ହେଉଥିବା ଦୀପାଲୋକର ଛାୟାପରି କ୍ଷଣସ୍ଥାୟୀ ବୋଲି କଳନା କରି) ସନ୍ତଃ ବନାନ୍ତଂ ଗତାଃ (ସଜ୍ଜନମାନେ, ସତ୍ପୁରୁଷମାନେ ତପସ୍ୟା କରିବା ପାଇଁ ବଣଭିତରକୁ ଚାଲିଗଲେ) ।

ଅର୍ଥ—ପ୍ରାସାଦର ଉପରିସ୍ଥାନରେ ବାସକରିବା, ପ୍ରତିଦିନ ଗୀତବାଦ୍ୟ ଶୁଣିବା ଓ ନୃତ୍ୟ ଦେଖିବା ଏବଂ ସୁନ୍ଦରୀ ରମଣୀମାନଙ୍କ ସଙ୍ଗଲାଭ କରିବା ନିଶ୍ଚୟ ସୁଖକର । କିନ୍ତୁ ବିବେକୀ ବ୍ୟକ୍ତିଗଣ ଏହି ସବୁ ସୁଖକୁ ଅଗ୍ନିରେ ପଡ଼ିବା ଇଚ୍ଛାରେ ଉଦ୍‌ଭ୍ରାନ୍ତ ହୋଇ ଉଡ଼ୁଥିବା ପତଙ୍ଗର ପକ୍ଷବାୟୁରେ ଚଞ୍ଚଳ ଦୀପାଲୋକର ଛାୟା ପରି ଅସ୍ଥିର ବୋଲି ବିଚାର କରି ତପସ୍ୟାଚରଣ ନିମିତ୍ତ ବନମଧ୍ୟରେ ପ୍ରବେଶ କରନ୍ତି ।

କିଂ କନ୍ଦାଃ କନ୍ଦରେଭ୍ୟଃ ପ୍ରଳୟମୁପଗତା ନିର୍ଝରା ବା ଗିରିଭ୍ୟଃ
ପ୍ରଧ୍ୱସ୍ତା ବା ତରୁଭ୍ୟଃ ସରସଫଳଭୃତୋ ବଲ୍‌କଲିନ୍ୟଶ୍ଚ ଶାଖାଃ ।
ବୀକ୍ଷ୍ୟନ୍ତେ ଯନ୍ମୁଖାନି ପ୍ରସଭମପଗତପ୍ରଶ୍ରୟାଣାଂ ଖଳାନାଂ
ଦୁଃଖୋପାତ୍ତାଲ୍ପବିତ୍ତସ୍ମୟବଶପବନାନର୍ତ୍ତିତ ଭ୍ରୂଲତାନି ॥୨୩॥

ଅନ୍ୱୟ—କନ୍ଦରେଭ୍ୟଃ (ଗୁହାଗୁଡ଼ିକରୁ) କନ୍ଦାଃ କିଂ (କନ୍ଦମୂଳ ପ୍ରଭୃତି କଣ) ପ୍ରଳୟମ୍ ଉପଗତାଃ (ଲୋପ ପାଇଗଲା) ବା ଗିରିଭ୍ୟଃ ନିର୍ଝରାଃ (ଅଥବା ପର୍ବତରୁ ଝରଣାଗୁଡ଼ିକ ଶୁଖିଗଲା କି ?) ବା ତରୁଭ୍ୟଃ (ଅଥବା ବୃକ୍ଷରୁ) ସରସଫଳଭୃତଃ (ମଧୁର ରସଯୁକ୍ତ ଫଳଧାରଣ କରୁଥିବା) ବଲ୍‌କଲିନ୍ୟଃ (ବଲ୍‌କଲଯୁକ୍ତ) ଶାଖାଃ ଚ ପ୍ରଧ୍ୱସ୍ତାଃ (ଶାଖାଡାଳଗୁଡ଼ିକ ଭାଂଗିପଡ଼ିଲା କି ?) ଯତ୍ (ଯେହେତୁ) ପ୍ରସଭଂ (ହଠାତ୍) ଅପଗତପ୍ରଶ୍ରୟାଣାଂ (ଅବିନୀତ) ଦୁଃଖୋପାତ୍ତାଲ୍ପବିତ୍ତସ୍ମୟବଶପବନାନର୍ତ୍ତିତ ଭ୍ରୂଲତାନି (ବହୁ କଷ୍ଟରେ ପାଇଥିବା ସାମାନ୍ୟ ଧନସମ୍ପଦ ହେତୁ କୁଟିଳ ଭ୍ରୂଲତାବିଶିଷ୍ଟ) ଖଳାନାଂ

ମୁଖାନି (ଦୁଷ୍ଟ ଦୁର୍ଜନମାନଙ୍କର ମୁଖ) ୱୀକ୍ଷ୍ୟନ୍ତେ (ବିକଳ ହୋଇ ଚାହିଁରହିବାକୁ ପଡ଼ୁଛି) ।

ଅର୍ଥ—ପାର୍ବତ୍ୟବନଭୂମିରେ ଥିବା କ୍ଷୁଧାନିବାରକ କନ୍ଦମୂଳ ପ୍ରଭୃତି, ତୃଷା ନିବାରକ ଝରଣାଗୁଡ଼ିକ ଏବଂ ଖାଦ୍ୟ ଓ ବସ୍ତ୍ର ଯୋଗାଉଥିବା ବୃକ୍ଷର ଶାଖାଗୁଡ଼ିକ ପୃଥିବୀରୁ କଣ ନଷ୍ଟ ହୋଇଗଲା ? ସେପରି ପ୍ରଳୟ ଯଦି ଘଟିନାହିଁ ତେବେ ମଣିଷ କାହିଁକି ଅତୀବ ଦୁର୍ବିନୀତ ଓ ବହୁ କଷ୍ଟରେ ଉପାର୍ଜିତ ସାମାନ୍ୟ ଧନ ହେତୁ ଗର୍ବିତ ଦୁଷ୍ଟ ଦୁର୍ଜନମାନଙ୍କର ଭ୍ରୂକୁଟିଯୁକ୍ତ ମୁଖକୁ ଚାହିଁ ରହୁଛି ?

ସମାରମ୍ଭା ଭଗ୍ନାଃ କତି ନ କତିବାରାଂସ୍ତବ ପଶୋ
ପିପାସୋସ୍ତୁଚ୍ଛେଽସ୍ମିନ୍ ଦ୍ରବିଣମୃଗତୃଷ୍ଣାର୍ଣ୍ଣବଜଳେ ।
ତଥାପି ପ୍ରତ୍ୟାଶା ବିରମତି ନ ତେଽଦ୍ୟାପି ଶତଧା
ନ ଦୀର୍ଣ୍ଣଂ ଯଚ୍ଚେତୋ ନିୟତମଶନିଗ୍ରାବଘଟିତମ୍ ॥୭୪॥

ଅନ୍ୱୟ—ପଶୋ (ରେ ବିବେକହୀନ ପଶୁ !) ଅସ୍ମିନ୍ ତୁଚ୍ଛେ (ଏହି ଅତି ତୁଚ୍ଛ) ଦ୍ରବିଣମୃଗତୃଷ୍ଣାର୍ଣ୍ଣବଜଳେ (ଧନ ରୂପକ ମୃଗତୃଷ୍ଣାସାଗର ଜଳରେ) ପିପାସୋଃ ତବ (ପିଇବାକୁ ଇଚ୍ଛୁକ, ତୃଷା ନିବାରଣରେ ଅଭିଳାଷୀ ତୋର) ସମାରମ୍ଭାଃ (ଗୃହବ୍ୟାପାର, ଘରକରଣା) କତି କତି ବାରାନ୍ ନ ଭଗ୍ନାଃ (କେତେ କେତେଥର ନଭାଂଗିଛି, ବହୁବାର ଭାଂଗିଭୁଜି ନଷ୍ଟ ହୋଇଛି) ତଥାପି ତେ (ତଥାପି ତୋର) ଶତଧା ପ୍ରତ୍ୟାଶା (ନାନାପ୍ରକାର ଗୃହବିଷୟ-ଜନିତ ଅଭିଳାଷ) ଅଦ୍ୟାପି ନ ବିରମତି (ଅଦ୍ୟାବଧି ଶାନ୍ତ ହେଲନାହିଁ) ଯତ୍ ଚେତଃ ନ ଦୀର୍ଣ୍ଣଂ (ଏତେ ପ୍ରକାର ଦୁର୍ଦଶାସତ୍ତ୍ୱେ ତୋର ଯେଉଁ ହୃଦୟ ଫାଟିଗଲା ନାହିଁ) ନିୟତଂ (ନିଶ୍ଚୟ) ଅଶନିଗ୍ରାବଘଟିତମ୍ (ତାହା ନିଦା ପଥରରେ ତିଆରି ହୋଇଛି) ।

ଅର୍ଥ—ରେ ବିବେକହୀନ ପଶୁ ! ତୁ ଏହି ତୁଚ୍ଛ ଧନରୂପକ ମୃଗତୃଷ୍ଣା ସାଗରର ଜଳ ପିଇବା ପାଇଁ ଇଚ୍ଛାକରି କେତେ କେତେ ଦୁଃଖ ଭୋଗ କଲୁଣି । ତୁ ଯାହା ସବୁ କରିଥିଲୁ ସେ ସମସ୍ତ ନଷ୍ଟ ହୋଇଗଲାଣି । ତଥାପି ତୁ ଘରସଂସାର ଚିନ୍ତାରୁ ବିରତ ହେଉନାହୁଁ । ଏତେ ଦୁର୍ଦ୍ଦଶାସତ୍ତ୍ୱେ ତୋର

ହୃଦୟ ଫାଟିଯାଉ ନଥିବାରୁ ତାହା କଦା ପଥରରେ ତିଆରି ବୋଲି ମନେହୁଏ ।

ଏକାକୀ ନିସ୍ପୃହଃ ଶାନ୍ତଃ ପାଣିପାତ୍ରୋ ଦିଗମ୍ବରଃ ।
କଦା ଶମ୍ଭୋ ଭବିଷ୍ୟାମି କର୍ମନିର୍ମୂଳନକ୍ଷମଃ ॥୬୫॥

ଅନ୍ୱୟ—ଶମ୍ଭୋ (ହେ ମଙ୍ଗଳମୟ ଶିବ !) କଦା (କେବେ) ଏକାକୀ (ଏକୁଟିଆ) ନିସ୍ପୃହଃ (କୌଣସି ବିଷୟରେ ଅଭିଳାଷ ନରଖି) ଶାନ୍ତଃ (ଶମଗୁଣଯୁକ୍ତ ହୋଇ) ପାଣିପାତ୍ରଃ (ହାତକୁ ପାତ୍ରରୂପେ ବ୍ୟବହାର କରି) ଦିଗମ୍ବରଃ (ନଗ୍ନଭାବେ) କର୍ମନିର୍ମୂଳନକ୍ଷମଃ (ଧର୍ମାଧର୍ମମୂଳକ ବିଧିବିଧାନରୁ ମୁକ୍ତ ହେବାରେ ସମର୍ଥ) ଭବିଷ୍ୟାମି (ହେବି ?) ।

ଅର୍ଥ—ହେ ଶମ୍ଭୁ ! ଅସହାୟ, ବିଷୟାସକ୍ତିରହିତ, ସଂଯତ ଓ ଦିଗମ୍ବର ହୋଇ ହାତକୁ ଭିକ୍ଷାପାତ୍ର କରି କେବେ ମୁଁ ସମସ୍ତ ପ୍ରକାର କର୍ମବନ୍ଧନରୁ ମୁକ୍ତ ହେବି ?

ପ୍ରାପ୍ତାଃ ଶ୍ରିୟଃ ସକଳକାମଦୁଘାସ୍ତତଃ କିଂ
କଳ୍ପଂ ସ୍ଥିତଂ ତନୁଭୃତାଂ ତନୁଭିସ୍ତତଃ କିମ୍ ।
ନ୍ୟସ୍ତଂ ପଦଂ ଶିରସି ବିଦ୍ୱିଷତାଂ ତତଃ କିଂ
ସଂମାନିତାଃ ପ୍ରଣୟିନୋ ବିଭବୈସ୍ତତଃ କିମ୍ ॥୬୬॥

ଅନ୍ୱୟ—ଯଦି ସକଳକାମଦୁଘାଃ (ସମସ୍ତ ମନୋରଥ ପୂରଣରେ ସମର୍ଥ) ଶ୍ରିୟଃ ପ୍ରାପ୍ତାଃ (ଧନବସନାଙ୍ଗନାଦିରୂପ ସମୃଦ୍ଧି ପ୍ରାପ୍ତ ହୁଏ) ତତଃ କିମ୍ (ସେଥିରୁ କଣ ମିଳିବ ?) ତନୁଭୃତାଂ ତନୁଭିଃ (ଶରୀରଧାରୀ ହୋଇ) କଳ୍ପଂ ସ୍ଥିତଂ (କଳ୍ପକାଳ ଶେଷ ପର୍ଯ୍ୟନ୍ତ ରହିଲେ) ତତଃ କିମ୍ (କଣ ହେବ ?) ବିଦ୍ୱିଷତାଂ ଶିରସି (ଶତ୍ରୁମାନଙ୍କ ମସ୍ତକରେ) ପଦଂ ନ୍ୟସ୍ତଂ (ପାଦ ରଖିଲେ ବି) ତତଃ କିମ୍ (କଣ ହେବ ?) ବିଭବୈଃ (ଐଶ୍ୱର୍ଯ୍ୟଦ୍ୱାରା) ପ୍ରଣୟିନଃ ସମ୍ମାନିତାଃ (ପ୍ରିୟଲୋକଙ୍କୁ ସନ୍ତୁଷ୍ଟ କଲେବି) ତତଃ କିମ୍ (କଣ ଲାଭ) ।

ଅର୍ଥ—ମନିଷ ଯଦି ସମସ୍ତ ମନୋରଥ ପୂରଣ କରିବା ଭଳି ସମ୍ପଦ ପାଏ, କଳ୍ପାନ୍ତକାଳ ପର୍ଯ୍ୟନ୍ତ ଏହି ଦେହରେ ଜୀବିତ ରହେ, ସମସ୍ତ ଶତ୍ରୁଙ୍କୁ ପରାଜିତ କରେ ଓ ଧନବଳରେ ବହୁ ଲୋକଙ୍କୁ ସନ୍ତୁଷ୍ଟ କରିପାରେ ତେବେ ତା'ର ଜୀବନ ସାର୍ଥକ ହେବ କି ?

ଭକ୍ତିର୍ଭବେ ମରଣଜନ୍ମଭୟଂ ହୃଦିସ୍ଥଂ
ସ୍ନେହୋ ନ ବନ୍ଧୁଷୁ ନ ମନ୍ମଥଜା ବିକାରାଃ
ସଂସର୍ଗଦୋଷରହିତା ବିଜନା ବନାନ୍ତା
ବୈରାଗ୍ୟମସ୍ତି କିମତଃ ପରମର୍ଥନୀୟମ୍ ॥୬୭॥

ଅନ୍ୱୟ—ଭବେ (ଶିବଙ୍କଠାରେ) ଭକ୍ତିଃ (ଯଦି ଶ୍ରଦ୍ଧା ଅଛି) ଜନ୍ମମରଣ ଭୟଂ (ଜନ୍ମ ଓ ମରଣ ଭୟକୁ) ହୃଦିସ୍ଥଂ (ହୃଦୟରେ ଅଛି) ବନ୍ଧୁଷୁ ନ ସ୍ନେହଃ (ବଂଧୁମାନଙ୍କଠାରେ ଅଯଥା ମମତା ନାହିଁ) ମନ୍ମଥଜାଃ ବିକାରାଃ ନ (କାମଜନିତ ବିକାର ନାହିଁ) ବିଜନାଃ (ଜନମାନବଶୂନ୍ୟ) ସଂସର୍ଗଦୋଷ-ରହିତାଃ (ଜନସମ୍ପର୍କ ଶୂନ୍ୟ) ବନାନ୍ତାଃ (ବନ ମଧ୍ୟସ୍ଥିତ ସ୍ଥାନ) ବୈରାଗ୍ୟମ୍ ଅସ୍ତି (ବିରକ୍ତିଭାବ ଯଦି ଅଛି) ଅତଃ ପରଂ କିମ୍ ଅର୍ଥନୀୟମ୍ (ଏହାଠାରୁ ଆଉ ଅଧିକ କଣ ପ୍ରାର୍ଥନା କରାଯାଇପାରେ) ।

ଅର୍ଥ—ମହାଦେବଙ୍କ ପ୍ରତି ଭକ୍ତିପରାୟଣ ହୁଅ, ସର୍ବଦା ମନରେ ଜନ୍ମ ଓ ମୃତ୍ୟୁଭୟ କଥା ସ୍ମରଣ କର, ଆତ୍ମୀୟ ସ୍ୱଜନଙ୍କ ପ୍ରତି ମମତା ରଖ ନାହିଁ, ଅନ୍ତରରେ କାମଜନିତ ବିକାରକୁ ସ୍ଥାନ ଦିଅନାହିଁ, କାମକ୍ରୋଧାଦି ସଂସର୍ଗ ଦୋଷ ତ୍ୟାଗକରି ନିର୍ଜନ ବନରେ ବାସକର—ଏପ୍ରକାର ବୈରାଗ୍ୟ ରୂପକ ଶ୍ରେଷ୍ଠଧନ ଯଦି ଥାଏ, ତେବେ ଆଉ ଅଧିକ କଣ ପ୍ରାର୍ଥନା କରାଯାଇପାରେ ?

ତସ୍ମାଦନନ୍ତମଜରଂ ପରମଂ ବିକାଶି
ତଦ୍‌ବ୍ରହ୍ମ ଚିନ୍ତୟ କିମେଭିରସଦ୍‌ବିକଳ୍ପୈଃ ।
ଯସ୍ୟାନୁସଂଗିଣ ଇମେ ଭୁବନାଧିପତ୍ୟ-
ଭୋଗାଦୟଃ କୃପଣଲୋକମତା ଭବନ୍ତି ॥୬୮॥

ଅନ୍ୱୟ—ତସ୍ମାତ୍ (ତେଣୁ) ତତ୍ (ସେହି) ଅନନ୍ତଂ (ଅସୀମ) ଅଜରଂ (ଜରାରହିତ) ପରମଂ ବିକାଶି (ଶ୍ରେଷ୍ଠ ଓ ଉଦିତ) ବ୍ରହ୍ମ (ବ୍ରହ୍ମଙ୍କୁ) ଚିନ୍ତୟ (ଚିନ୍ତାକର) ଏଭିଃ ଅସଦ୍‌ବିକଳ୍ପୈଃ (ଏହି ସବୁ ବିଷୟବାସନାଜନିତ ଅସତ୍ ଚିନ୍ତାଦ୍ୱାରା) କିଂ (କି ଲଭ ?) ଯସ୍ୟ (ଯେଉଁ ବ୍ରହ୍ମଙ୍କର) ଇମେ ଭୁବନାଧିପତ୍ୟଭୋଗାଦୟଃ (ଏହି ଭୁବନର ଆଧିପତ୍ୟ, ବିଷୟଭୋଗ ପ୍ରଭୃତି) ଅନୁଷଙ୍ଗିଣଃ (ଆନୁଷଂଗିକ) କୃପଣଲୋକମତାଃ ଭବନ୍ତି (କୃପାପ୍ରାର୍ଥୀମାନଙ୍କର ଅଭିଳଷିତ ବସ୍ତୁରୂପେ ଅଭିହିତ)।

ଅର୍ଥ—ତେଣୁ ସେହି ଅନନ୍ତ, ଜନ୍ମମୃତ୍ୟୁରହିତ ସର୍ବଶ୍ରେଷ୍ଠ, ସର୍ବବ୍ୟାପୀ, ପ୍ରକାଶମୟ ବ୍ରହ୍ମଙ୍କୁ ଚିନ୍ତାକର। ଏହି ସବୁ କ୍ଷଣସ୍ଥାୟୀ ବିଷୟବାସନାଭୋଗ ସମ୍ବନ୍ଧରେ ବୃଥା ସମୟ ନଷ୍ଟକଲେ କିଛି ଲଭ ହେବନାହିଁ। ବ୍ରହ୍ମଜ୍ଞାନ ଲଭକଲେ କୃପଣର (ବ୍ରହ୍ମଜ୍ଞାନହୀନ) ଅଭୀଷ୍ଟ ତ୍ରିଭୁବନର ଆଧିପତ୍ୟ ଓ ବିଷୟବାସନା ନିରର୍ଥକ ମନେହେବ।

ରାତ୍ରି ସୈବ ପୁନଃ ସ ଏବ ଦିବସୋ ମତ୍ୱା ବୁଧା ଜନ୍ତବୋ
ଧାବନ୍ତ୍ୟୁଦ୍ୟମିନସ୍ତଥୈବ ନିଭୃତପ୍ରାରବ୍ଧତତ୍ତତ୍କ୍ରିୟାଃ।
ବ୍ୟାପାରୈଃ ପୁନରୁକ୍ତଭୁକ୍ତବିଷୟୈରେବଂବିଧେନାମୁନା
ସଂସାରେଣ କଦର୍ଥିତାଃ କଥମହୋ ମୋହାନ୍ନ ଲଜ୍ଜାମହେ ॥୭୯॥

ଅନ୍ୱୟ—ଅବୁଧାଃ ଜନ୍ତବଃ (ଅବିବେକୀ ପ୍ରାଣୀମାନେ) ସା ଏବ ରାତ୍ରିଃ (ସେହି ରାତି) ପୁନଃ ସ ଏବ ଦିବସଃ ମତ୍ୱା (ପୁଣି ସେହି ଦିନ ଜାଣି ମଧ୍ୟ) ନିଭୃତ ପ୍ରାରବ୍ଧତତ୍ତତ୍କ୍ରିୟାଃ (ଗୋପନରେ ପୂର୍ବପରି ସେହି ସେହି କାର୍ଯ୍ୟ କରିବା ନିମିତ୍ତ) ତଥା ଏବ ଉଦ୍ୟମିନଃ ଧାବନ୍ତି (ସେହିପରି ବ୍ୟସ୍ତ ହୋଇ ଧାଉଁଛନ୍ତି) ପୁନରୁକ୍ତଭୁକ୍ତବିଷୟୈଃ ବ୍ୟାପାରୈଃ (ପୂର୍ବୋକ୍ତ, ପୂର୍ବାନୁଭୂତ ବିଷୟ ବ୍ୟାପାରଦ୍ୱାରା) ଏବଂ ବିଧେନ (ଏହିପରି) ଅମୁନା ସଂସାରେଣ (ଏହି ଦୁଃଖ ରୂପକ ସଂସାରଦ୍ୱାରା) କଦର୍ଥିତାଃ (ଅତିଶୟ କଷ୍ଟଭୋଗ କରୁଛୁ) ଅହୋ (ଆଶ୍ଚର୍ଯ୍ୟ) କଥଂ (କିପରି, କାହିଁକି) ମୋହାତ୍ ନ ଲଜ୍ଜାମହେ (ଅଜ୍ଞାନତା ହେତୁ ଲଜ୍ଜିତ ହେଉନାହୁଁ)।

ଅର୍ଥ—ପୂର୍ବପରି ଆଜି ମଧ୍ୟ ସେହି ରାତ୍ରି, ସେହି ଦିନ, ଏହା ଜାଣି ମଧ୍ୟ ଅଜ୍ଞଲୋକେ ଚର୍ବିତଚର୍ବଣ କଲପରି ପୂର୍ବାଚରିତ ଗୋପନୀୟ କାର୍ଯ୍ୟମାନ ପୁନର୍ବାର କରିବା ପାଇଁ ଉଦ୍ୟମୀ ହୁଅନ୍ତି । ହାୟ, ପରିବର୍ତ୍ତନଶୀଳ ଏହି ସଂସାର ଆମକୁ ବାରମ୍ବାର ସେହି ସେହି ସ୍ଥାନକାର୍ଯ୍ୟରେ ବିଡ଼ମ୍ବିତ କରୁଥିଲେ ମଧ୍ୟ ଆମେ ଟିକିଏହେଲେ ଲଜ୍ଜା ଅନୁଭବ କରୁନାହୁଁ ।

ମହୀ ଶଯ୍ୟା ଶଯ୍ୟା ବିପୁଳମୁପଧାନଂ ଭୁଜଲତା
ବିତାନଂଚାକାଶଂ ବ୍ୟଜନମନୁକୂଲୋଽୟମନିଳଃ ।
ସ୍ଫୁରଦ୍ଦୀପଶ୍ଚନ୍ଦ୍ରୋ ବିରତିବନିତାସଙ୍ଗମୁଦିତଃ
ସୁଖଂ ଶାନ୍ତଃ ଶେତେ ମୁନିରତନୁଭୂତିର୍ନୃପ ଇବ ॥୭୦॥

ଅନ୍ୱୟ—ଶାନ୍ତଃ ମୁନିଃ (ଶମଗୁଣ ଯୁକ୍ତ ଯୋଗୀ) ମହୀ ଶଯ୍ୟା ଶଯ୍ୟା (ପର୍ଯ୍ୟଙ୍କ ତୁଲ୍ୟ ଭୂପୃଷ୍ଠ ଶଯ୍ୟାରେ) ଭୁଜଲତା ବିପୁଳମ୍ ଉପଧାନଂ [ଉନ୍ନତ ଉପଧାନ (ତକିଆ) ସଦୃଶ ବାହୁକୁ ମୁଣ୍ଡତଳେ ଦେଇ] ଆକାଶଂ ବିତାନଂ (ଚାନ୍ଦୁଆ ରୂପକ ଆକାଶ ତଳେ) ଅୟମ୍ ଅନୁକୂଳଃ ଅନିଳଃ ବ୍ୟଜନଂ (ବ୍ୟଜନ ଚାଳିତ ପବନ ସଦୃଶ ଅନୁକୂଳ ବାୟୁ ସେବନ କରି) ସ୍ଫୁରଦ୍ଦୀପଃ ଚନ୍ଦ୍ରଃ (ଉଜ୍ଜ୍ୱଳ ଦୀପରୂପକ ଚନ୍ଦ୍ରାଲୋକରେ) ବିରତିବନିତାସଙ୍ଗମୁଦିତଃ (ବୈରାଗ୍ୟ ରୂପକ ବନିତା ସଙ୍ଗଜନିତ ଆନନ୍ଦ ଅନୁଭବ କରି) ଅତନୁଭୂତିଃ (ବିପୁଳ ଐଶ୍ୱର୍ଯ୍ୟଶାଳୀ) ନୃପତିଃ ଇବ (ରାଜାଙ୍କ ପରି) ସୁଖଂ ଶେତେ (ସୁଖରେ ଶୋଇଥାଏ) ।

ଅର୍ଥ—ଶାନ୍ତ ଯୋଗୀଶ୍ୱର, ଐଶ୍ୱର୍ଯ୍ୟଶାଳୀ ରାଜାଙ୍କ ପରି, ଧରଣୀତଳ ଶଯ୍ୟାରେ ବାହୁକୁ ଉପଧାନ କରି, ଆକାଶ ରୂପକ ଚନ୍ଦ୍ରାତପ ତଳେ, ବ୍ୟଜନ ପବନ ସଦୃଶ ଅନୁକୂଳ ବାୟୁରେ, ଉଜ୍ଜ୍ୱଳ ପ୍ରଦୀପ ତୁଲ୍ୟ ଶରତ୍କାଳୀନ ଚନ୍ଦ୍ରାଲୋକରେ, ବୈରାଗ୍ୟରୂପାରମଣୀ ସହିତ ସୁରତରେ ପରିତୃପ୍ତ ହୋଇ ନିର୍ଭୟରେ ଶୟନକରେ ।

କଂ ବେଦୈଃ ସ୍ମୃତିଭିଃ ପୁରାଣପଠନୈଃ ଶାସ୍ତ୍ରୈର୍ମହାବିସ୍ତରୈଃ
ସ୍ୱର୍ଗଗ୍ରାମକୁଟୀନିବାସଫଳଦୈଃ କର୍ମକ୍ରିୟାବିଭ୍ରମୈଃ ।
ମୁକ୍ତ୍ୱୈକଂ ଭବଦୁଃଖରଚନାବିଧ୍ୱଂସକାଳାନଳଂ
ସ୍ୱାତ୍ମାନନ୍ଦପଦପ୍ରବେଶକଳନଂ ଶେଷା ବଣିଗ୍ବୃତ୍ତୟଃ ॥୭୧॥

ଅନ୍ୱୟ—ଭବଦୁଃଖରଚନାବିଧ୍ୱଂସକାଳାନଳଂ (ସଂସାରର ଦୁଃଖରାଶି ଦହନରେ ସମର୍ଥ) ଏକଂ (ଏକମାତ୍ର) ସ୍ୱାତ୍ମାନନ୍ଦପଦପ୍ରବେଶକଳନଂ (ପରମାନନ୍ଦପଦ ଅନୁଭୂତିକୁ) ମୁକ୍ତ୍ୱା (ଛାଡ଼ି) ବେଦୈଃ କଂ (ବେଦ ପଢ଼ି କି ଲାଭ ?) ସ୍ମୃତିଭିଃ (ମନ୍ୱାଦି ସ୍ମୃତିଶାସ୍ତ୍ରଦ୍ୱାରା) ପୁରାଣପଠନୈଃ (ପୁରାଣପାଠ ଦ୍ୱାରା) ମହାବିସ୍ତରୈଃ ଶାସ୍ତ୍ରୈଃ (ଅତିବିସ୍ତୃତ ଶାସ୍ତ୍ରାଧ୍ୟୟନଦ୍ୱାରା) ସ୍ୱର୍ଗଗ୍ରାମକୁଟୀନିବାସଫଳଦୈଃ (ସ୍ୱର୍ଗତୁଲ୍ୟ ଗ୍ରାମରେ କୁଡ଼ିଆ କରି ରହିବା ଦ୍ୱାରା) କର୍ମକ୍ରିୟାବିଭ୍ରମୈଃ (ଯଜ୍ଞାଦିକର୍ମରୂପକ ବିଳାସଦ୍ୱାରା) କଂ (କି ଲାଭ) ଶେଷାଃ (ଅଧ୍ୟୟନ ବ୍ୟାଖ୍ୟାନ ପ୍ରଭୃତି) ବଣିଗ୍ବୃତ୍ତୟଃ ( ବେପାରୀର ବେପାରପରି ଜୀବିକା ମାତ୍ର) ।

ଅର୍ଥ—ବେଦ, ସ୍ମୃତି, ପୁରାଣ, ଅତିବିସ୍ତୃତ ଶାସ୍ତ୍ରସମୂହର ଅଧ୍ୟୟନ ଓ ମନନଦ୍ୱାରା କି ଲାଭ ହେବ ? ସ୍ୱର୍ଗତୁଲ୍ୟ ଗ୍ରାମରେ କୁଡ଼ିଆଟିଏ କରି ରହି ଯାଗଯଜ୍ଞ, ଜପତପ କରିବାର କି ପ୍ରୟୋଜନ ? ସଂସାରର ସମସ୍ତ ଦୁଃଖଭାର-ବିନାଶ କରିବାରେ ସମର୍ଥ ପ୍ରଳୟାଗ୍ନି ସଦୃଶ ଆତ୍ମୋପଲବ୍ଧିଜନିତ ଆନନ୍ଦ-ଲାଭକୁ ତ୍ୟାଗକରି ଏହିସବୁ ବ୍ୟାବସାୟିକ କାର୍ଯ୍ୟକଳାପରେ ସମୟ ନଷ୍ଟ କରିବା ଉଚିତ ନୁହେଁ ।

ଆୟୁଃ କଲ୍ଲୋଳଲୋଳଂ କତିପୟଦିବସସ୍ଥାୟିନୀ ଯୌବନଶ୍ରୀ-
ରର୍ଥାଃ ସଂକଲ୍ପକଳ୍ପା ଘନସମୟତଡ଼ିଦ୍ବିଭ୍ରମା ଭୋଗପୂରାଃ ।
କଣ୍ଠାଶ୍ଳେଷୋପଗୂଢ଼ଂ ତଦପି ନଚ ଚିରଂ ଯତ୍ପ୍ରିୟାଭିଃ ପ୍ରଣୀତଂ
ବ୍ରହ୍ମଣ୍ୟାସକ୍ତଚିତ୍ତା ଭବତ ଭବଭୟାମ୍ଭୋଧିପାରଂ ତରୀତୁମ୍ ॥୭୨॥

ଅନ୍ୱୟ—ଆୟୁଃ (ଆୟୁଷ, ଜୀବନକାଳ) କଲ୍ଲୋଳଲୋଳଂ (ତରଙ୍ଗ ପରି ଚଞ୍ଚଳ) ଯୌବନଶ୍ରୀଃ (ଯୌବନକାଳୀନ ସୌନ୍ଦର୍ଯ୍ୟ) କତିପୟଦିବସସ୍ଥାୟିନୀ

(ଅଲ୍ପ କେତୋଟି ଦିନ ରହେ) ଅର୍ଥାଃ (ଧନସମ୍ପଦ) ସଂକଳ୍ପକଳ୍ପାଃ (ଅନିତ୍ୟ) ଭୋଗପୂଗାଃ (ଭୋଗବିଳାସାଦି) ଘନସମୟତଡ଼ିଦ୍‌ବିଭ୍ରମାଃ (ବର୍ଷାକାଳୀନ ବିଦ୍ୟୁତ୍ ପରି ଅତି ଅସ୍ଥିର) ପ୍ରିୟାଭିଃ ପ୍ରଣୀତଂ (କାନ୍ତା, ପ୍ରିୟାର ଅତି ଆଦରରେ କୃତ) ଯତ୍ କଣ୍ଠାଶ୍ଳେଷୋପଗୂଢ଼ଂ (ଯେଉଁ କଣ୍ଠ ଆଲିଙ୍ଗନ) ତତ୍ ଅପି ଚିରଂ ନହି (ତାହା ମଧ୍ୟ ବହୁତ ସମୟ ରହେନାହିଁ) ଭବଭୟାମ୍ଭୋଧିପାରଂ (ସଂସାରଭୟ ରୂପକ ସାଗରକୁ) ତରିତୁଂ (ପାରହେବା ନିମିତ୍ତ) ବ୍ରହ୍ମଣି (ପରମେଶ୍ୱରଙ୍କଠାରେ) ଆସକ୍ତଚିତ୍ତାଃ ଭବତ (ମନଲଗାଇଦିଅ) ।

ଅର୍ଥ—ମଣିଷର ଜୀବନକାଳ ଜଳର ତରଙ୍ଗ ପରି ଚଞ୍ଚଳ । ଯୌବନ କାଳର ସୌନ୍ଦର୍ଯ୍ୟ ଅଲ୍ପ କେତୋଟି ଦିନପାଇଁ ରହେ । ମନର ଅଭିଳାଷ ପରି ଧନସମ୍ପଦ କ୍ଷଣସ୍ଥାୟୀ । ବିଷୟଭୋଗବିଳାସ ବର୍ଷାକାଳୀନ ବିଦ୍ୟୁତ୍ ପରି ଅସ୍ଥିର । ପ୍ରିୟତମାର କଣ୍ଠ ଆଲିଙ୍ଗନ ସୁଖ ଅଳ୍ପକ୍ଷଣସ୍ଥାୟୀ । ତେଣୁ ହେ ପଣ୍ଡିତଗଣ ! ସଂସାରଭୟ ରୂପକ ସାଗରକୁ ପାର ହେବା ପାଇଁ ଏକାଗ୍ରଚିତ୍ତରେ ପରମେଶ୍ୱରଙ୍କଠାରେ ମନ ଲଗାଅ ।

ବ୍ରହ୍ମାଣ୍ଡମଣ୍ଡଳୀମାତ୍ରଂ କିଂ ଲଭାୟ ମନସ୍ୱିନଃ ।
ଶଫରୀସ୍ଫୁରିତେନାବ୍‌ଧେଃ କ୍ଷୁବ୍‌ଧତା ଜାତୁ ଜାୟତେ ॥୭୩॥

ଅନ୍ୱୟ—ବ୍ରହ୍ମାଣ୍ଡମଣ୍ଡଳୀମାତ୍ରଂ (ସମଗ୍ର ବ୍ରହ୍ମାଣ୍ଡ) ମନସ୍ୱିନଃ (ମନସ୍ୱୀ ପୁରୁଷର) କିଂ ଲଭାୟ (ପାଇଲେ କି ଲଭ) ଶଫରୀ ସ୍ଫୁରିତେନ (କରାଣ୍ଡି ମାଛ ଡେଇଁଲେ) ଜାତୁ (କେବେହେଲେ) ଅବ୍‌ଧେଃ (ସାଗରର) କ୍ଷୁବ୍‌ଧତା (କମ୍ପନ) ଜାୟତେ (ଜାତହୁଏ କି ?)

ଅର୍ଥ—ଅତିବ କ୍ଷୁଦ୍ର ଶଫରୀ (କରାଣ୍ଡିମାଛ)ଟିଏ ଯେତେ ଡେଇଁଲେ ମଧ୍ୟ ସାଗରର ଜଳରାଶି ଯେପରି ଆଦୌ ବିକ୍ଷୁବ୍‌ଧ ହୁଏନାହିଁ ସେହିପରି ବିଶ୍ୱ-ବ୍ରହ୍ମାଣ୍ଡ ମନସ୍ୱୀ ବ୍ୟକ୍ତିର ଚିତ୍ତକୁ ପ୍ରଲୋଭିତ କରିପାରେ ନାହିଁ । ବିଶ୍ୱର ସମଗ୍ର ଐଶ୍ୱର୍ଯ୍ୟ ପାଇଲେ ମଧ୍ୟ ଧୀର ହୃଦୟ କେବେହେଲେ ବିଚଳିତ ହୁଏନାହିଁ ।

ଯଦାସୀଦଜ୍ଞାନଂ ସ୍ମରତିମିରସଂସ୍କାରଜନିତଂ
ତଦା ଦୃଷ୍ଟଂ ନାରୀମୟମିଦମଶେଷଂ ଜଗଦପି ।
ଇଦାନୀମସ୍ମାକଂ ପଟୁତରବିବେକାଞ୍ଜନଜୁଷାଂ
ସମୀଭୂତା ଦୃଷ୍ଟିସ୍ତ୍ରିଭୁବନମପି ବ୍ରହ୍ମ ମନୁତେ ॥୭୮॥

ଅନ୍ୱୟ—ଯଦା (ଯେତେବେଳେ) ସ୍ମରତିମିରସଂସ୍କାରଜନିତଂ (କାମାନ୍ଧକାରଜନିତ) ଅଜ୍ଞାନଂ (ଅବିବେକ ପଣିଆ) ଆସୀତ୍ (ଥିଲା) ତଦା (ସେତେବେଳେ) ଇଦମ୍ ଅଶେଷଂ (ଏହି ନିଖିଳ) ଜଗତ୍ ଅପି (ଜଗତ ମଧ୍ୟ) ନାରୀମୟଂ (ନାରୀପୂର୍ଣ୍ଣ) ଦୃଷ୍ଟଂ (ଦେଖିଲି) ଇଦାନୀଂ (ବର୍ତ୍ତମାନ) ପଟୁତର ବିବେକାଞ୍ଜନଜୁଷାଂ (ପରିପକ୍ୱଜ୍ଞାନଯୁକ୍ତ) ଅସ୍ମାକଂ (ଆମର) ସମୀଭୂତା ଦୃଷ୍ଟିଃ (ବିଗ୍ରହର ସମତା, ବିଗ୍ରହ ଦୃଷ୍ଟି) ତ୍ରିଭୁବନମ୍ ଅପି (ତ୍ରିଭୁବନକୁ ମଧ୍ୟ) ବ୍ରହ୍ମ ମନୁତେ (ବ୍ରହ୍ମବୋଲି ମନେକରୁଛି) ।

ଅର୍ଥ—କାମାନ୍ଧକାରଜନିତ ଅଜ୍ଞାନତା ଯେତେବେଳେ ଘେରିରହିଥିଲା ସେତେବେଳେ ସମଗ୍ର ଜଗତକୁ କେବଳ ସ୍ତ୍ରୀରୂପରେହିଁ ଦେଖୁଥିଲି, କାରଣ ମୁଁ ଥିଲି ଅତ୍ୟଧିକ ସ୍ତ୍ରୈଣ । ବର୍ତ୍ତମାନ ବିବେକ ରୂପକ ଅଞ୍ଜନ ଲଗାଇବା ଫଳରେ ମୋର ବିଗ୍ରହ ଦୃଷ୍ଟିରେ ସମତା ଆସିଛି । ସେହି ଦୃଷ୍ଟିରୁ ଏବେ ମୁଁ ତ୍ରିଭୁବନକୁ ବ୍ରହ୍ମମୟ ମନେକରୁଛି ।

ରମ୍ୟାଶ୍ଚନ୍ଦ୍ରମରୀଚୟସ୍ତୃଣବତୀ ରମ୍ୟା ବନାନ୍ତସ୍ଥଳୀ
ରମ୍ୟଂ ସାଧୁସୁହୃତ୍ସମାଗମସୁଖଂ କାବ୍ୟେଷୁ ରମ୍ୟାଃ କଥାଃ ।
କୋପୋପାହିତବାଷ୍ପବିନ୍ଦୁତରଳଂ ରମ୍ୟଂ ପ୍ରିୟାୟାମୁଖଂ
ସର୍ବଂ ରମ୍ୟମରମ୍ୟତାମୁପଗତେ ଚିତ୍ତେ ନ କିଞ୍ଚିତ୍ପୁନଃ ॥୭୯॥

ଅନ୍ୱୟ—ଚନ୍ଦ୍ରମରୀଚୟଃ (ଚନ୍ଦ୍ରଜ୍ୟୋତ୍ସ୍ନା) ରମ୍ୟାଃ (ଅତି ସୁନ୍ଦର) ତୃଣବତୀ (ଦୂର୍ବାଦିତୃଣଯୁକ୍ତ) ବନାନ୍ତସ୍ଥଳୀ (ବନଭୂମି ମଧ୍ୟ) ରମ୍ୟା (ରମଣୀୟ) ସାଧୁସୁହୃତ୍ସମାଗମସୁଖଂ ରମ୍ୟଂ (ଉତ୍ତମ ବନ୍ଧୁ ସମାଗମ ସୁଖକର) କାବ୍ୟେଷୁ ରମ୍ୟାଃ କଥାଃ (କାବ୍ୟରେ ସୁନ୍ଦର ସୁନ୍ଦର କଥା ଅଛି) କୋପୋପାହିତବାଷ୍ପ-

ବନ୍ଧୁତରଲଂ (ମିଥ୍ୟା କୋପବଶତଃ ଲୋତକ ଛଳ ଛଳ) ପ୍ରିୟାୟାଃ ମୁଖଂ ରମ୍ୟଂ (ପ୍ରିୟତମାର ମୁଖ ଖୁବ୍ ସୁନ୍ଦର) ସର୍ବଂ ରମ୍ୟଂ (ସବୁକିଛି ସୁନ୍ଦର) ପୁନଃ (ପୁଣି) ଅରମ୍ୟତାମ୍ ଉପଗତେ ଚତ୍ତେ (ମନରେ ଏସବୁ ଅନିତ୍ୟ ବୋଲି ବିଚାର ଆସିଲେ) କିଞ୍ଚିତ୍ ନ (କିଛି ଆଉ ସୁନ୍ଦର ଦେଖାଯାଏ ନାହିଁ) ।

ଅର୍ଥ—ଚନ୍ଦ୍ରକିରଣ, ତୃଣାଚ୍ଛାଦିତ ବନଭୂମି ଅତିମନୋହର, ସଜ୍ଜନ ସଙ୍ଗମର ଆନନ୍ଦ ଓ କାବ୍ୟପାଠର ଆନନ୍ଦ ମଧ୍ୟ ଅତ୍ୟନ୍ତ ସୁନ୍ଦର । ପ୍ରଣୟ-କଳହଜନିତ ଅଶ୍ରୁଧାରାରେ ଆପ୍ଳୁତ ପ୍ରିୟତମାର ମୁଖମଣ୍ଡଳ ମଧ୍ୟ ତତୋଽଧିକ ସୁନ୍ଦର ଦେଖାଯାଏ । କିନ୍ତୁ ହୃଦୟରେ ଏ ସମସ୍ତ ଅନିତ୍ୟ ବୋଲି ଜ୍ଞାନ ଉଦୟ ହେଲେ ଆଉ କୌଣସି ବସ୍ତୁ ରମଣୀୟ ଦେଖାଯାଏ ନାହିଁ । ରମଣୀୟ ବସ୍ତୁଗୁଡ଼ିକ ଅସାର ବୋଲି ମନେହୁଏ ।

ଭିକ୍ଷାଶୀ ଜନସଙ୍ଗମଧ୍ୟରହିତଃ ସ୍ୱାୟତ୍ତଚେଷ୍ଟଃ ସଦା
ଦାନାଦାନବିରକ୍ତମାର୍ଗନିରତଃ କଶ୍ଚିତ୍ତପସ୍ୱୀ ସ୍ଥିତଃ ।
ରଥ୍ୟା କ୍ଷୀଣବିଶୀର୍ଣ୍ଣଜୀର୍ଣ୍ଣବସନପ୍ରାନ୍ତୋତ୍‌ଥକନ୍ଥାସଖୋ
ନିର୍ମାନୋ ନିରହଂକୃତଃ ଶମସୁଖାଭୋଗୈକବଦ୍ଧସ୍ପୃହଃ ॥୭୬॥

ଅନ୍ୱୟ—ଭିକ୍ଷାଶୀ (ଭିକ୍ଷାନ୍ନଭୋଜୀ) ଜନସଙ୍ଗମଧ୍ୟରହିତଃ (ଲୋକ ସମ୍ପର୍କ ରହିତ) ସଦା ସ୍ୱାୟତ୍ତଚେଷ୍ଟଃ (ସର୍ବଦା ସ୍ୱାଧୀନ) ଦାନାଦାନବିରକ୍ତମାର୍ଗନିରତଃ (ଦାନଗ୍ରହଣାଦିମାର୍ଗରୁ ବିରତ) ରଥ୍ୟାକ୍ଷୀଣବିଶୀର୍ଣ୍ଣଜୀର୍ଣ୍ଣବସନପ୍ରାନ୍ତୋତ୍‌ଥ-କନ୍ଥାସଖଃ (ଜୀର୍ଣ୍ଣଶୀର୍ଣ୍ଣ ଚିରକନାରେ ନିର୍ମିତ କନ୍ଥା ପରିଧାନ କରିଥିବା) ନିର୍ମାନଃ (ଅଭିମାନ ଶୂନ୍ୟ) ନିରହଂକୃତଃ (ଅହଙ୍କାର ରହିତ) ଶମସୁଖା-ଭୋଗୈକବଦ୍ଧସ୍ପୃହଃ (ଏକମାତ୍ର ଶାନ୍ତିରୂପକ ସୁଖ ଭୋଗ କରିବାକୁ ଇଚ୍ଛୁକ) କଶ୍ଚିତ୍ ତପସ୍ୱୀ ସ୍ଥିତଃ (କୌଣସି ତପସ୍ୱୀ ଥିବା ବିରଳ) ।

ଅର୍ଥ—କେବଳ ଭିକ୍ଷାନ୍ନରେ ଯେ ଦେହଧାରଣ କରେ, ଜନସମ୍ପର୍କ ରହିତ, ସର୍ବଦା ସ୍ୱାଧୀନ, ଦାନ ଦେବା ଓ ଦାନ ଗ୍ରହଣ କରିବା ବିଷୟରେ ନିସ୍ପୃହ, ରାଜପଥରେ ପରିତ୍ୟକ୍ତ ଛିନ୍ନ ବସ୍ତ୍ର ଯାହାର ପରିଧେୟ, ପୁରାତନ

ଜୀର୍ଣ୍ଣ କନ୍ଥାଟି ଯାହାର ଅବଲମ୍ବନ, ନିରଭିମାନ, ନିରହଙ୍କାର ଓ ବୈରାଗ୍ୟ ସୁଖଭୋଗରେ ଯେ ଅଭିଳାଷୀ ସେପରି ମହାତପସ୍ୱୀ ଏ ସଂସାରରେ ବିରଳ ।

ମାତର୍ମେଦିନି ତାତ ମାରୁତ ସଖେ ତେଜ୍ୟୋତିଃ ସୁବନ୍ଧୋ ଜଳ
ଭ୍ରାତର୍ବ୍ୟୋମ ନିବଦ୍ଧ ଏଷ ଭବତାମନ୍ତ୍ୟଃ ପ୍ରଣାମାଞ୍ଜଳିଃ ।
ଯୁଷ୍ମତ୍ସଙ୍ଗବଶୋପଜାତସୁକୃତୋଦ୍ରେକସ୍ଫୁରନ୍ନିର୍ମଳ-
ଜ୍ଞାନାପାସ୍ତସମସ୍ତମୋହମହିମା ଲୀୟେ ପରେ ବ୍ରହ୍ମଣି ॥୭୭॥

ଅନ୍ୱୟ—ମାତଃ ମେଦନି (ହେ ମା' ପୃଥିବୀ) ତାତ ମାରୁତ (ହେ ପିତା ବାୟୁ) ସଖେ ଜ୍ୟୋତିଃ (ହେ ବନ୍ଧୁ ତେଜ) ସୁବନ୍ଧୋ ଜଳ (ହେ ପ୍ରିୟତମ ମିତ୍ର ଜଳ) ଭ୍ରାତଃ ବ୍ୟୋମ (ହେ ଭାଇ ଆକାଶ) ଭବତାମ୍ ଅନ୍ତ୍ୟଃ (ଆପଣ-ମାନଙ୍କଠାରୁ ଜାତ) ଏଷଃ ପ୍ରଣାମାଞ୍ଜଳିଃ ନିବଦ୍ଧଃ (ଏହି ମୋର ସପ୍ରଣାମ ନିବେଦନ) ଯୁଷ୍ମତ୍ ସଙ୍ଗବଶୋପଜାତସୁକୃତୋଦ୍ରେକସ୍ଫୁରନ୍ନିର୍ମଳଜ୍ଞାନାପାସ୍ତ-ସମସ୍ତମୋହମହିମା (ଆପଣମାନଙ୍କ ସଂସର୍ଗରୁ ଉପାର୍ଜିତ ପୁଣ୍ୟଫଳରେ ନିର୍ମଳ ଜ୍ଞାନୋଦୟହେତୁ ସମସ୍ତ ମୋହାଦି ଅଜ୍ଞାନତାକୁ ତ୍ୟାଗ କରିଥିବା ମୁଁ) ପରେ ବ୍ରହ୍ମଣି ଲୀୟେ (ପରଂ ବ୍ରହ୍ମଙ୍କଠାରେ ଲୀନହେଉଛି) ।

ଅର୍ଥ—ହେ ମା' ପୃଥିବୀ ! ଜନକ ବାୟୁ ! ସଖେ ଅଗ୍ନି ! ପ୍ରିୟତମବନ୍ଧୁ ଜଳ ! ଭାଇ ଆକାଶ ! ଅଞ୍ଜଳିବଦ୍ଧ ହୋଇ ମୁଁ ଆପଣମାନଙ୍କୁ ପ୍ରଣାମ ଜଣାଉଛି । ଆପଣମାନଙ୍କ ସାହଚର୍ଯ୍ୟରେ ଅର୍ଜିତ ପୁଣ୍ୟବଳରେ ନିର୍ମଳ ଜ୍ଞାନ ଅର୍ଜନ କରିବା ସଙ୍ଗେ ସଙ୍ଗେ ସମସ୍ତ ଅଜ୍ଞାନତାକୁ ପରିତ୍ୟାଗ କରି ପରଂ-ବ୍ରହ୍ମରେ ଲୀନ ହେଉଛି ।

ଯାବତ୍ସ୍ୱସ୍ଥମିଦଂ ଶରୀରମରୁଜଂ ଯାବଜ୍ଜରା ଦୂରତୋ
ଯାବଚ୍ଚେନ୍ଦ୍ରିୟଶକ୍ତିରପ୍ରତିହତା ଯାବତ୍କ୍ଷୟୋ ନାୟୁଷଃ ।
ଆତ୍ମଶ୍ରେୟସି ତାବଦେବ ବିଦୁଷା କାର୍ଯ୍ୟଃ ପ୍ରଯତ୍ନୋ ମହାନ୍
ସଂଦୀପ୍ତେ ଭବନେ ତୁ କୂପଖନନଂ ପ୍ରତ୍ୟୁଦ୍ୟମଃ କୀଦୃଶଃ ॥୭୮॥

ଅନ୍ୱୟ—ଯାବତ୍ ଇଦଂ ଶରୀରଂ (ଯେ ପର୍ଯ୍ୟନ୍ତ ଏହି ଦେହ) ସ୍ୱସ୍ଥମ୍ ଅରୁଜଂ (ସୁସ୍ଥ, ନୀରୋଗ) ଯାବତ୍ ଜରା ଦୂରତଃ (ବାର୍ଦ୍ଧକ୍ୟ ଯେପର୍ଯ୍ୟନ୍ତ ଦୂରରେ ଅଛି) ଯାବତ୍ ଇନ୍ଦ୍ରିୟଶକ୍ତିଃ ଚ ଅପ୍ରତିହତା (ଯେପର୍ଯ୍ୟନ୍ତ ଚକ୍ଷୁ-ଶ୍ରୋତାଦି ଇନ୍ଦ୍ରିୟର ଶକ୍ତି ସ୍ଖଳିତ ହୋଇନାହିଁ) ଯାବତ୍ ଆୟୁଷଃ ନ କ୍ଷୟଃ (ଯେ ପର୍ଯ୍ୟନ୍ତ ଆୟୁଷ ଶେଷ ହୋଇନାହିଁ) ତାବତ୍ ଏବ (ସେ ପର୍ଯ୍ୟନ୍ତ) ବିଦୁଷା ଆତ୍ମଶ୍ରେୟସି (ପଣ୍ଡିତ ବ୍ୟକ୍ତିଗଣ ଆତ୍ମୋନ୍ନତି ସାଧନ ପାଇଁ) ମହାନ୍ ପ୍ରଯତ୍ନଃ କାର୍ଯ୍ୟଃ (ବିଶେଷ ଉଦ୍ୟମ କରିବା ଆବଶ୍ୟକ) ତୁ ଭବନେ ସଂଦୀପ୍ତେ (କିନ୍ତୁ ଘରେ ନିଆଁ ଲାଗିଯିବା ପରେ) କୂପଖନନଂ ପ୍ରତି ଉଦ୍ୟମଃ (କୂଅ ଖୋଳିବା ପାଇଁ ଚେଷ୍ଟା) କୀଦୃଶଃ (କି ପ୍ରକାର ?)

ଅର୍ଥ—ଦେହ ଯେପର୍ଯ୍ୟନ୍ତ ସୁସ୍ଥ ଓ ନୀରୋଗ ଅଛି, ବାର୍ଦ୍ଧକ୍ୟ ଦୂରରେ ଅଛି, ଇନ୍ଦ୍ରିୟମାନଙ୍କର ଶକ୍ତି ନ୍ୟୂନ ହୋଇନାହିଁ ଓ ଆୟୁଷ ମଧ୍ୟ କ୍ଷୀଣ ହୋଇନାହିଁ, ସେପର୍ଯ୍ୟନ୍ତ ନିଜର କଲ୍ୟାଣ ପାଇଁ ବୁଦ୍ଧିମାନ୍ ପୁରୁଷ ସର୍ବବିଧ ପ୍ରଯତ୍ନ କରିବା ଉଚିତ। ଘରେ ନିଆଁ ଲାଗିବାପରେ କୂଅ ଖୋଳିଲା ପରି ଦେହର ବଳ କ୍ଷୀଣ ହେବାପରେ ଯେ କୌଣସି ଉଦ୍ୟମ କଲେବି କିଛି ଲାଭ ହେବନାହିଁ।

ଗଙ୍ଗାତରଙ୍ଗକଣଶୀକରଶୀତଳାନି
ବିଦ୍ୟାଧରାଧ୍ୟୁଷିତଚାରୁଶିଳାତଳାନି।
ସ୍ଥାନାନି କିଂ ହିମବତଃ ପ୍ରଳୟଂ ଗତାନି
ଯତ୍ସାବମାନପରପିଣ୍ଡରତା ମନୁଷ୍ୟାଃ ॥୭୯॥

ଅନ୍ୱୟ—ହିମବତଃ (ହିମାଳୟର) ଗଙ୍ଗାତରଙ୍ଗକଣଶୀକରଶୀତଳାନି (ଗଙ୍ଗାନଦୀର ତରଙ୍ଗୋତ୍ଥିତ ଜଳକଣାଦ୍ୱାରା ଶୀତଳ) ବିଦ୍ୟାଧରାଧ୍ୟୁଷିତ-ଚାରୁଶିଳାତଳାନି (ବିଦ୍ୟାଧରମାନଙ୍କ ଆଶ୍ରୟଭୂତମନୋହରଶିଳାପଟ୍ଟଯୁକ୍ତ) ସ୍ଥାନାନି (ସ୍ଥାନଗୁଡ଼ିକ) ପ୍ରଳୟଂ ଗତାନି କିଂ (ପ୍ରଳୟ ହୋଇଗଲାଣି କି ?) ଯତ୍ (ଯେଣୁ) ମନୁଷ୍ୟାଃ (ମଣିଷମାନେ) ସାବମାନପରପିଣ୍ଡରତାଃ (ଅପମାନିତ ଓ ପରାନ୍ନଜୀବୀ ହୋଇଛନ୍ତି)।

ଅର୍ଥ—ପୁଣ୍ୟତୋୟା ଗଙ୍ଗାନଦୀର ତରଙ୍ଗୋତ୍‌ଥିତ ସୂକ୍ଷ୍ମ ଜଳକଣାଦ୍ୱାରା ଶୀତଳ ଓ ବିଦ୍ୟାଧରମାନଙ୍କ ବାସସ୍ଥାନରୂପେ ବ୍ୟବହୃତ ରମଣୀୟ ଶିଳାତଳ ସମୂହ ପରିବେଷ୍ଟିତ ହିମାଳୟର ପ୍ରାନ୍ତଭାଗ ପ୍ରଳୟ ହୋଇ ଧ୍ୱଂସ ପାଇଗଲା କି ? ନୋହିଲେ ଲୋକମାନେ ଅପମାନିତ ହୋଇ ମଧ୍ୟ ପରାନ୍ନଭୋଜନ ପ୍ରତି କିପରି ଆସକ୍ତ ହୋଇପଡ଼ୁଛନ୍ତି ।

ଯଦା ମେରୁଃ ଶ୍ରୀମାନ୍ ନିପତତି ଯୁଗାନ୍ତାଗ୍ନି ନିହତଃ
ସମୁଦ୍ରାଃ ଶୁଷ୍ୟନ୍ତି ପ୍ରଚୁରମକରଗ୍ରାହନିଳୟାଃ ।
ଧରା ଗଚ୍ଛତ୍ୟନ୍ତଂ ଧରଣୀଧରପାଦୈରପି ଧୃତା
ଶରୀରେ କା ବାର୍ତ୍ତା କରିକଳଭକର୍ଣ୍ଣାଗ୍ରଚପଳେ ॥୮୦॥

ଅନ୍ୱୟ—ଯଦା (ଯେତେବେଳେ) ଶ୍ରୀମାନ୍ ମେରୁଃ (ରତ୍ନମୟ ମେରୁ-ପର୍ବତ) ଯୁଗାନ୍ତାଗ୍ନି ନିହତଃ (ଯୁଗାନ୍ତକାଳୀନ ଅଗ୍ନିରେ ଭସ୍ମୀଭୂତ ହୋଇ) ନିପତତି (ପଡ଼ିଯିବ) ପ୍ରଚୁରମକରଗ୍ରାହନିଳୟାଃ (ବହୁ ମଗରକୁମ୍ଭୀର-ଜଳଚରଙ୍କ ବାସଭୂମି) ସମୁଦ୍ରାଃ (ସପ୍ତସମୁଦ୍ର) ଶୁଷ୍ୟନ୍ତି (ଶୁଖିଯିବ) ଧରଣୀ-ଧରପାଦୈଃ ଧୃତା ଅପି (ଶେଷନାଗ ବାସୁକି ଧାରଣ କରିଥିଲେ ମଧ୍ୟ) ଧରା (ପୃଥିବୀ) ଅନ୍ତଂ ଗଚ୍ଛତି (ରସାତଳଗାମୀ ହେବ) କରିକଲଭକର୍ଣ୍ଣାଗ୍ରଚପଳେ (ହସ୍ତୀଶାବକର କର୍ଣ୍ଣାଗ୍ରଭାଗ ଚଞ୍ଚଳ ହେଲା ପରି ଚଞ୍ଚଳ) ଶରୀରେ (ଏହି ଶରୀରରେ) କା ବାର୍ତ୍ତା (କି କଥା, କିଏ କହିବ) ।

ଅର୍ଥ—ପ୍ରଳୟକାଳୀନ ଅଗ୍ନିରେ ଭସ୍ମୀଭୂତ ହୋଇ ରତ୍ନମୟ ସୁମେରୁ ପର୍ବତ ଯେତେବେଳେ ଧ୍ୱଂସପାତ୍ ହୋଇଯିବ, ମତ୍ସ୍ୟମଗର ଓ କୁମ୍ଭୀର ପ୍ରଭୃତି ଜଳଚରଙ୍କ ଆଶ୍ରୟସ୍ଥଳୀ ମହାସାଗର ଯେତେବେଳେ ଶୁଖିଯିବ ଏବଂ ବାସୁକି ନିଜର ସହସ୍ରଫଣା ପୃଷ୍ଠରେ ଧାରଣ କରିଥିବା ପୃଥିବୀ ଯେତେବେଳେ ରସାତଳକୁ ଚାଲିଯିବ, ସେତେବେଳେ ଗଜଶାବକର କର୍ଣ୍ଣପରି ଚଞ୍ଚଳ ଏହି ନଶ୍ୱର ଦେହ କଥା କିଏ ବା ପଚାରିବ ? ତେଣୁ ଏ ନଶ୍ୱର ଦେହର କୌଣସି ମୂଲ୍ୟ ନାହିଁ ବୋଲି ମନେରଖିବା ଉଚିତ ।

ପାତାଳମାବିଶସି ଯାସି ନଭୋ ବିଲଂଘ୍ୟ
ଦିଙ୍ମଣ୍ଡଳଂ ଭ୍ରମସି ମାନସ ଚାପଲେନ ।
ଭ୍ରାନ୍ତ୍ୟାପି ଜାତୁ ବିମଳଂ କଥମାତ୍ମନୀନଂ
ତଦ୍‌ବ୍ରହ୍ମ ନ ସ୍ମରସି ନିର୍ବୃତିମେଷି ଯେନ ॥୮୧॥

ଅନ୍ୱୟ—ମାନସ (ରେ ମନ) ଚାପଲେନ (ଚାପଲ୍ୟ ବଶତଃ) ପାତାଳମ୍ ଆବିଶସି (ପାତାଳରେ ପଶୁଛୁ) ନଭଃ ବିଲଂଘ୍ୟ (ଆକାଶକୁ ଲଙ୍ଘନ କରି) ଯାସି (ଯାଉଛୁ) ଦିଙ୍ମଣ୍ଡଳଂ ଭ୍ରମସି (ଚତୁର୍ଦ୍ଦିଗରେ ବୁଲୁଛୁ) ଜାତୁ (କେବେ-ହେଲେ) ଭ୍ରାନ୍ତ୍ୟାପି (ଭୁଲରେ ମଧ୍ୟ) ବିମଳଂ (ନିର୍ମଳ) ଆତ୍ମନୀନଂ (ଆତ୍ମାଶ୍ରିତ) ତଦ୍ ବ୍ରହ୍ମ (ସେହି ବ୍ରହ୍ମଙ୍କୁ) କଥଂ ନ ସ୍ମରସି (କାହିଁକି ସ୍ମରଣ କରୁନାହୁଁ) ଯେନ (ଯାହାଦ୍ୱାରା) ନିର୍ବୃତିଂ (ପରମ ଆନନ୍ଦ) ଏଷି (ଲାଭ କରନ୍ତୁ) ।

ଅର୍ଥ—ରେ ମନ ! ଚଞ୍ଚଳତାବଶତଃ ତୁ କେତେବେଳେ ପାତାଳରେ ପ୍ରବେଶ କରୁଛୁ ତ କେତେବେଳେ ଆକାଶରେ ଉଡ଼ୁଛୁ ଏବଂ ଚତୁର୍ଦ୍ଦିଗରେ ମଧ୍ୟ ଭ୍ରମଣ କରିପାରୁଛୁ । କିନ୍ତୁ କେବେହେଲେ ଆନନ୍ଦ ପାଇଲୁ ନାହିଁ କି ଶାନ୍ତିରେ ରହିପାରିଲୁ ନାହିଁ । ଯାହାକୁ ସ୍ମରଣ କଲେହିଁ ତୁ ପରମାନନ୍ଦ ଲାଭ କରନ୍ତୁ ସେହି ପରଂବ୍ରହ୍ମ ନିଜ ହୃଦୟ ଭିତରେ ଥିଲେ ମଧ୍ୟ ତୁ ଦିନେହେଲେ ତାଙ୍କୁ ସ୍ମରଣ କଲୁନାହିଁ ।

ଅହୌ ବା ହାରେ ବା ବଳବତି ରିପୌ ବା ସୁହୃଦି ବା
ମଣୌ ବା ଲୋଷ୍ଟେ ବା କୁସୁମଶୟନେ ବା ଦୃଷଦି ବା ।
ତୃଣେ ବା ସ୍ତୈଣେ ବା ମମ ସମଦୃଶୋ ଯାନ୍ତୁ ଦିବସାଃ
କ୍ୱଚିତ୍‌ପୁଣ୍ୟେଽରଣ୍ୟେ ଶିବ ଶିବ ଶିବେତି ପ୍ରଳପତଃ ॥୮୨॥

ଅନ୍ୱୟ—ମମ ଦିବସାଃ (ମୋର ଦିନଗୁଡ଼ିକ) କ୍ୱଚିତ୍ ପୁଣ୍ୟେ ଅରଣ୍ୟେ (କୌଣସି ପୁଣ୍ୟ ବନଭୂମିରେ) ଅହୌ ବା (ସର୍ପଠାରେ) ହାରେ ବା (ଅଥବା ମଣିମୁକ୍ତାଦି ହାରରେ) ରିପୌ ବା (ଶତ୍ରୁଠାରେ) ସୁହୃଦି ବା (ମିତ୍ରଠାରେ)

ମଣୌ ବା (ମଣିମାଣିକ୍ୟରେ) ଲୋଷ୍ଟେ (ମାଟି ପଥରରେ) କୁସୁମଶୟନେ ବା (ଫୁଲଶେଯରେ) ଦୃଷଦ ବା (ଅଥବା ଶିଳା ଶଯ୍ୟାରେ) ତୃଣେ ବା (ଘାସରେ) ସ୍ତ୍ରୈଣେ ବା (କାମିନୀଗହଣରେ) ସମଦୃଶଃ (ସମତ୍ୱବ ଓ ସମଦୃଷ୍ଟି ପୋଷଣ କରି ମୋର) ଶିବ ଶିବ ଶିବ ଇତି ପ୍ରଲପତଃ (ଶିବ ଶିବ ଜପକରି) ଯାନ୍ତୁ (ଅତିବାହିତ ହେଉ) ।

ଅର୍ଥ—କୌଣସି ପବିତ୍ର ବନଭୂମିରେ ସର୍ପ ଅଥବା ମଣିମୁକ୍ତାଦିର ହାରରେ, ଶତ୍ରୁ ବା ମିତ୍ରଠାରେ, ମଣି ବା ପଥରଖଣ୍ଡରେ ପୁଷ୍ପରଚିତ ଶଯ୍ୟା ବା ଶିଳାଶଯ୍ୟାରେ, ତୃଣ ଅଥବା ସ୍ତ୍ରୀସମୂହରେ ସମଦର୍ଶୀ ହୋଇ ଶିବ ଶିବ ଜପ କରି ମୋର ଦିନକାଳ ଅତିବାହିତ ହେଉ, ଏହାହିଁ ମୋର ଜୀବନର ଅଭିଳାଷ ।

ତ୍ରୈଲୋକ୍ୟାଧିପତିତ୍ୱମେବ ବିରସଂ ଯସ୍ମିନ୍ମହାଶାସନେ
ତଲ୍ଲବ୍ଧ୍ୱାଶନବସ୍ତ୍ରମାନଘଟନେ ଭୋଗେ ରତିଂ ମା କୃଥାଃ ।
ଭୋଗଃ କୋଽପି ସ ଏକ ଏବ ପରମୋ ନିତ୍ୟୋଦିତୋ ଜୃମ୍ଭତେ
ଯତ୍ସ୍ୱାଦାଦ୍ ବିରସା ଭବନ୍ତି ବିଭବାସ୍ତ୍ରୈଲୋକ୍ୟରାଜ୍ୟାଦୟଃ ॥୮୩॥

ଅନ୍ୱୟ—ଯସ୍ମିନ୍ ମହାଶାସନେ (ଯେଉଁ ପରମାତ୍ମଜ୍ଞାନ ସ୍ଫୁରିତ ହେଲେ) ତ୍ରୈଲୋକ୍ୟାଧିପତିତ୍ୱମ୍ ଏବ (ତ୍ରିଭୁବନର ସ୍ୱାମୀତ୍ୱ ମଧ୍ୟ) ବିରସଂ (ନୀରସ) ତତ୍ ଲବ୍ଧ୍ୱା (ତାହା ପାଇ) ଅଶନ ବସ୍ତ୍ରମାନଘଟନେ ଭୋଗେ (ଭୋଜନ ପରିଧାନ ମାନସମ୍ମାନ ପ୍ରତିଷ୍ଠାଦି ଭୋଗବିଳାସରେ) ରତିଂ ମା କୃଥାଃ (ଆସକ୍ତ ହୁଅନାହିଁ) କଃ ଅପି ଭୋଗଃ ଜୃମ୍ଭତେ (କେଉଁ ଭୋଗ ପ୍ରସାରିତ ହୁଏ) ଏକଃ ସଃ ନିତ୍ୟୋଦିତଃ ପରମଃ ଏବ (ଯେଉଁ ଭୋଗ ନିତ୍ୟ ତାହାହିଁ ଏକମାତ୍ର ପରମ ଅର୍ଥାତ୍ ଶ୍ରେଷ୍ଠ ଭୋଗ) ଯତ୍ ସ୍ୱାଦାତ୍ (ଯାହାର ସ୍ୱାଦ ଅନୁଭବ କଲେ) ତ୍ରୈଲୋକ୍ୟରାଜ୍ୟାଦୟଃ ବିଭବାଃ (ତ୍ରିଭୁବନର ପ୍ରଭୁତ୍ୱ ଲାଭ ରୂପକ ସମ୍ପଦ) ବିରସାଃ ଭବନ୍ତି (ଅସାର ପ୍ରତୀତ ହୁଅନ୍ତି) ।

ଅର୍ଥ—ହୃଦୟରେ ଯେଉଁ ବ୍ରହ୍ମଜ୍ଞାନ ସ୍ଫୁରିତ ହେଲେ ତ୍ରିଲୋକର ସ୍ୱାମୀତ୍ୱ ମଧ୍ୟ ନୀରସ, ନିରର୍ଥକ ମନେହୁଏ ସେହି ଜ୍ଞାନ ଲାଭ କରିବା ପାଇଁ ଭୋଜନ, ପରିଧାନ, ମାନସମ୍ମାନ ପ୍ରତିଷ୍ଠାଦି ଭୋଗବିଳାସରେ ମନଦିଅ ନାହିଁ । ସେହି ଭୋଗ ହେଉଛି ଅନିର୍ବଚନୀୟ ସର୍ବଶ୍ରେଷ୍ଠ, ନିତ୍ୟ, ପ୍ରକାଶମାନ ବ୍ରହ୍ମାନନ୍ଦ । ତାହାହିଁ ଏକମାତ୍ର ଆନନ୍ଦ ଯାହା ଆସ୍ୱାଦନ କଲେ ତ୍ରିଲୋକର ପ୍ରଭୁତ୍ୱଲାଭ ରୂପକ ସମ୍ପଦ ଅସାର ପ୍ରତୀତ ହୁଏ ।

ନାଭ୍ୟସ୍ତା ଭୁବି ବାଦିବୃନ୍ଦଦମନୀ ବିଦ୍ୟା ବିନୀତୋଚିତା
ଖଡ୍‌ଗାଗ୍ରୈଃ କରିକୁମ୍ଭକୁଟ୍ଟଦଳନୈର୍ନାକଂ ନ ନୀତଂ ଯଶଃ ।
କାନ୍ତାକୋମଳପଲ୍ଲବାଧରରସଃ ପୀତୋ ନ ଚନ୍ଦ୍ରୋଦୟେ
ତାରୁଣ୍ୟଂ ଗତମେବ ନିଷ୍ଫଳମହୋ ଶୂନ୍ୟାଳୟେ ଦୀପବତ୍ ॥୮୩॥

ଅନ୍ୱୟ—ଅହୋ (ଆଶ୍ଚର୍ଯ୍ୟ) ଭୁବି (ସଂସାରରେ) ବାଦିବୃନ୍ଦଦମନୀ (ବିଦ୍ୟାବାଦୀଙ୍କୁ ଦମନ କରିବାର ସାମର୍ଥ୍ୟ ଥିବା) ବିନୀତୋଚିତା (ବିନୀତ ବ୍ୟକ୍ତିଙ୍କ ଯୋଗ୍ୟ) ବିଦ୍ୟା ନ ଅଭ୍ୟସ୍ତା (ବିଦ୍ୟା ଶିକ୍ଷା କଲୁ ନାହିଁ) ଖଡ୍‌ଗାଗ୍ରୈଃ (ଖଡ୍‌ଗଦ୍ୱାରା) କରିକୁମ୍ଭକୁଟ୍ଟଦଳନୈଃ (ହାତୀର ମସ୍ତକକୁ ଛିନ୍ନ-ଭିନ୍ନ କରି) ନାକଂ (ସ୍ୱର୍ଗ ପର୍ଯ୍ୟନ୍ତ) ଯଶଃ ନ ନୀତଂ (ଯଶ ବିସ୍ତାର କରିପାରିଲୁ ନାହିଁ) ଚନ୍ଦ୍ରୋଦୟେ (ଚନ୍ଦ୍ର ଉଦୟ ସମୟରେ) କାନ୍ତାକୋମଳପଲ୍ଲବାଧରରସଃ (କାନ୍ତାର କୋମଳ ଅଧରରୁ ରସ) ନ ପୀତଃ (ପାନ କରିପାରିଲୁ ନାହିଁ) ଶୂନ୍ୟାଳୟେ (କେହି ନଥିବା ଘରେ) ଦୀପବତ୍ (ଦୀପପରି) ତାରୁଣ୍ୟଂ (ଯୌବନ) ନିଷ୍ଫଳଂ ଗତମ୍ ଏବ (ବୃଥାରେ ଅତିବାହିତ ହୋଇଗଲା) ।

ଅର୍ଥ—ପ୍ରତିବାଦୀମାନଙ୍କୁ ଦମନ କରିବାରେ ସମର୍ଥ, ବିନୟୀ ବ୍ୟକ୍ତି-ମାନଙ୍କର ଅଭ୍ୟାସଯୋଗ୍ୟ ବେଦାଦି ବିଦ୍ୟା ଅନୁଶୀଳନ କଲୁନାହିଁ, ଖଡ୍‌ଗର ଅଗ୍ରଭାଗରେ ହାତୀର ମସ୍ତକକୁ ଛିନ୍ନ ଭିନ୍ନ କରି ସ୍ୱର୍ଗ ପର୍ଯ୍ୟନ୍ତ ଯଶ ବିସ୍ତାର କରିପାରିଲୁ ନାହିଁ ଏବଂ ଚନ୍ଦ୍ରୋଦୟ ସମୟରେ ପ୍ରିୟତମାର କୋମଳ ଅଧରରୁ ରସ ଆସ୍ୱାଦନ କଲୁନାହିଁ । ହାୟ ! ଶୂନ୍ୟ ମନ୍ଦିରରେ ଥିବା ପ୍ରଦୀପ ପରି ଆମର ଯୌବନକାଳ ବୃଥାରେ ନଷ୍ଟ ହୋଇଗଲା ।

ଜୀର୍ଣ୍ଣା ଏବ ମନୋରଥାଃ ସ୍ୱହୃଦୟେ ଯାତଂ ଜରାଂ ଯୌବନଂ
ହନ୍ତାଙ୍ଗେଷୁ ଗୁଣାଶ୍ଚ ବନ୍ଧ୍ୟଫଳତାଂ ଯାତା ଗୁଣଜ୍ଞୈର୍ବିନା ।
କିଂ ଯୁକ୍ତଂ ସହସାଭ୍ୟୁପୈତି ବଳବାନ୍‌କାଳଃ କୃତାନ୍ତୋଽକ୍ଷମୀ
ହ୍ୟାଜ୍ଞାତଂ ମଧୁସୂଦନାଙ୍ଘ୍ରିକମଳଂ ମୁକ୍ତ୍ୱାସ୍ତି ନାନ୍ୟା ଗତିଃ ॥୮୫॥

ଅନ୍ୱୟ—ସ୍ୱହୃଦୟେ (ନିଜ ହୃଦୟ ଭିତରେ) ମନୋରଥାଃ (ପୋଷଣ କରିଥିବା ବିଭିନ୍ନ ଅଭିଳାଷ) ଜୀର୍ଣ୍ଣାଃ ଏବ (ବୁଢ଼ା ହୋଇଗଲା) ଯୌବନଂ ଜରାଂ ଯାତଂ (ଯୌବନ ଯାଇ ବାର୍ଦ୍ଧକ୍ୟ ଆସିଗଲା) ହନ୍ତ (ଦୁଃଖକର) ଗୁଣଜ୍ଞୈଃ ବିନା (ଗୁଣ ଚହ୍ନିବା ଲୋକ ଅଭାବରୁ) ଅଙ୍ଗେଷୁ (ଦେହରେ) ଗୁଣାଃ ଚ (ଥିବା ଗୁଣଗୁଡ଼ିକ) ବନ୍ଧ୍ୟଫଳତାଂ ଯାତାଃ (ନିଷ୍ଫଳ ହୋଇଗଲା) ଅକ୍ଷମୀ (କ୍ଷମାହୀନ) ବଳବାନ୍ କାଳଃ କୃତାନ୍ତଃ (କାଳ ଯମ) ସହସା ଅଭ୍ୟୁପୈତି (ଶୀଘ୍ର ଆସୁଛି) ଯୁକ୍ତଂ କିମ୍ (ଏହା କଣ ଯୁକ୍ତିଯୁକ୍ତ ?) ହି ଆଜ୍ଞାତଂ ମଧୁସୂଦନାଙ୍ଘ୍ରିକମଳଂ ତ୍ୟକ୍ତ୍ୱା (ତେଣୁ ମଧୁସୂଦନଙ୍କ ପାଦପଦ୍ମକୁ ଛାଡ଼ି) ଅନ୍ୟା ଗତିଃ ନ ଅସ୍ତି (ଅନ୍ୟ ଗତି ନାହିଁ) ।

ଅର୍ଥ—ସମସ୍ତ ମନୋରଥ ହୃଦୟରେହିଁ ଜୀର୍ଣ୍ଣ ହୋଇଗଲା, ସେଥିରୁ ଗୋଟିଏ ହେଲେ ସଫଳ ହେଲନାହିଁ । ଯୌବନ ଅବସ୍ଥା ମଧ୍ୟ ବିଫଳ ହୋଇଗଲା । ଗୁଣଗ୍ରାହୀ ଲୋକଙ୍କ ଅଭାବରୁ ସମସ୍ତ ସୁଗୁଣ ନିଷ୍ଫଳ ହେଲା । ବର୍ତ୍ତମାନ ସର୍ବନାଶକ ବଳବାନ୍ କାଳଯମ ନିକଟକୁ ମାଡ଼ି ଆସୁଛି । ଏଥିରୁ ଜାଣୁଛି, ମଧୁସୂଦନଙ୍କ ପାଦପଦ୍ମକୁ ଛାଡ଼ି ଅନ୍ୟ କୌଣସି ଗତି ଆଉ ନାହିଁ ।

ତୃଷାଶୁଷ୍ୟତ୍ୟାସ୍ୟେ ପିବତି ସଲିଳଂ ସ୍ୱାଦୁ ସୁରଭି
କ୍ଷୁଧାର୍ତ୍ତଃ ସଂଶାଲୀନ୍‌କବଳୟତି ଶାକାଦିବଳିତାନ୍ ।
ପ୍ରଦୀପ୍ତେ ରାଗାଗ୍ନୌ ସୁଦୃଢ଼ତରମାଶ୍ଲିଷ୍ୟତି ବଧୂଂ
ପ୍ରତୀକାରେ ବ୍ୟାଧେଃ ସୁଖମିତି ବିପର୍ଯ୍ୟସ୍ୟତି ଜନଃ ॥୮୬॥

ଅନ୍ୱୟ—ତୃଷାଶୁଷ୍ୟତି ଆସ୍ୟେ (ତୃଷାରେ ଆକୁଳ ହୋଇ ମୁହଁ ଶୁଖିଗଲେ) ସ୍ୱାଦୁ ସୁରଭି ସଲିଳଂ ପିବତି (ମଧୁର ସୁଗନ୍ଧି ଜଳପାନ କରେ)

କ୍ଷୁଧାର୍ତ୍ତଃ (କ୍ଷୁଧାରେ ଆତୁର) ଶାକାଦବଳଡାନ୍ ଫଶାଳ୍ୟନ୍ (ଦୁଧ ଦହି ଘିଅ ଗୋଳାହୋଇଥିବା ଶାଳୀଗ୍ରଉଳର ଅନ୍ନ) କବଳୟତ (ଖାଇଥାଏ) ରାଗାଗ୍ନୌ (କାମାଗ୍ନି) ପ୍ରଦୀପ୍ତେ (ଉଦ୍ଦୀପ୍ତ ହେଲେ) ବଧୂଂ ସୁଦୃଢ଼ତରମ୍ ଆଶ୍ଳିଷ୍ୟତ (ପ୍ରିୟତମାକୁ ଗାଢ଼ଭାବରେ ଆଲିଙ୍ଗନ କରିଥାଏ) ବ୍ୟାଧେଃ (ରୋଗର) ପ୍ରତୀକାରେ ସୁଖମ୍ ଇତ (ପ୍ରତୀକାର କଲେ ସୁଖ ମିଳେ ବୋଲି ଭାବି) ଜନଃ ବିପର୍ଯ୍ୟସ୍ୟତ (ଲୋକ ଅଜ୍ଞତାବଶତଃ ବିପରୀତ ଫଳ ଭୋଗ କରେ) ।

ଅର୍ଥ—ତୃଷାରେ ଆକୁଳ ହୋଇ କଣ୍ଠ ଶୁଖିଗଲେ ଲୋକ ମଧୁର, ଶୀତଳ ଓ ସୁଗନ୍ଧିତ ଜଳ ପାନକରେ, କ୍ଷୁଧାରେ ଆତୁର ହୋଇ ଶାକ, ଦଧି ଦୁଗ୍ଧ ଘୃତାଦି ମିଶ୍ରିତ ଅନ୍ନ ଭୋଜନ କରେ ଏବଂ କାମାଗ୍ନି ଉଦ୍ଦିପ୍ତ ହେଲେ ସୁନ୍ଦରୀ ରମଣୀକୁ ଗାଢ଼ ଭାବରେ ଆଲିଙ୍ଗନ କରେ । ଏହାଦ୍ୱାରା ରୋଗର ଔଷଧ ଅଛି ବୋଲି ଜାଣି ମଣିଷ ଆନନ୍ଦିତ ହୁଏ । କିନ୍ତୁ ମଣିଷ ଏଗୁଡ଼ିକୁ ପ୍ରକୃତ ସୁଖ ମନେକରି ବିପରୀତ ଫଳହିଁ ଭୋଗ କରିଥାଏ ।

ସ୍ନାତ୍ୱା ଗାଙ୍ଗୈଃ ପୟୋଭିଃ ଶୁଚିକୁସୁମଫଳୈରର୍ଚ୍ଚୟିତ୍ୱା ବିଭୋ ତ୍ୱାଂ
ଧ୍ୟେୟେ ଧ୍ୟାନଂ ନିବେଶ୍ୟ କ୍ଷିତିଧରକୁହରଗ୍ରାବପର୍ଯ୍ୟଙ୍କମୂଳେ ।
ଆତ୍ମାରାମଃ ଫଳାଶୀ ଗୁରୁବଚନରତସ୍ତ୍ୱତ୍ପ୍ରସାଦାତ୍ସ୍ମରାରେ
ଦୁଃଖଂ ମୋକ୍ଷ୍ୟେ କଦାହଂ ସମକରଚରଣେ ପୁଂସିସେବା-
ସମୁତ୍ଥମ୍ ॥୮୭॥

ଅନ୍ୱୟ—ସ୍ମରାରେ ବିଭୋ (ହେ ପ୍ରଭୋ ଶିବ) ଗାଙ୍ଗୈଃ ପୟୋଭିଃ ସ୍ନାତ୍ୱା (ଗଙ୍ଗା ଜଳରେ ସ୍ନାନ କରି) ଶୁଚିକୁସୁମଫଳୈଃ ଅର୍ଚ୍ଚୟିତ୍ୱା (ବିଶୁଦ୍ଧ ଫଳପୁଷ୍ପ-ଦ୍ୱାରା ପୂଜାକରି) ତ୍ୱାଂ ଧ୍ୟାୟନ୍ (ତୁମକୁ ଧ୍ୟାନକରି) କ୍ଷିତିଧରକୁହରଗ୍ରାବ-ପର୍ଯ୍ୟଙ୍କମୂଳେ ନିବେଶ୍ୟ (ହିମାଳୟ ଗହ୍ୱରରେ ଥିବା ଶିଳାଖଣ୍ଡ ତଳେ ବସି) ଆତ୍ମାରାମଃ (ଆତ୍ମାନୁଭବସମ୍ପନ୍ନ) ଫଳାଶୀ (ଫଳମୂଳ ଖାଇ) ଗୁରୁବଚନରତଃ (ଗୁରୁଙ୍କ ଉପଦେଶ ପାଳନ ପୂର୍ବକ) ତ୍ୱତ୍ପ୍ରସାଦାତ୍ (ତୁମ କୃପାରୁ) କଦା (କେବେ) ଅହଂ (ମୁଁ) ସମକରଚରଣେ ପୁଂସି (ଧନୀ ପୁରୁଷମାନଙ୍କ ଠାରେ)

ସେବାସମୁତ୍‌ଥଂ ଦୁଃଖଂ (ସେବା ଜନିତ ଦୁଃଖକୁ) ମୋକ୍ଷ୍ୟେ (ତ୍ୟାଗ କରିପାରିବି) ।

ଅର୍ଥ—ହେ ମହାଦେବ ! ଗଙ୍ଗାଜଳରେ ସ୍ନାନ କରି, ବିଶୁଦ୍ଧ ଫଳପୁଷ୍ପ ସମର୍ପଣ ପୂର୍ବକ ତୁମକୁ ଧ୍ୟାନ କରି, ହିମାଳୟ ପର୍ବତ ଗୁହାରେ ଥିବା ପାଷାଣ ଶଯ୍ୟା ତଳେ ବସି, ଏକାନ୍ତ ସମାହିତ ଚିତ୍ତରେ ଆସକ୍ତିହୀନ ହୋଇ, ଗୁରୁଙ୍କ ଉପଦିଷ୍ଟ କ୍ରିୟାନୁଷ୍ଠାନରେ ତତ୍ପର ହେବା ସଙ୍ଗେ ସଙ୍ଗେ ଫଳାହାରରେ ରହି, ତୁମରି କୃପାରୁ ମୁଁ କେବେ ଭାଗ୍ୟବାନ୍ ବ୍ୟକ୍ତିମାନଙ୍କ ପରିଚର୍ଯ୍ୟାଜନିତ ଦୁଃଖରୁ ମୁକ୍ତିଲାଭ କରିବି ?

ମହେଶ୍ୱରେ ବା ଜଗତାମଧୀଶ୍ୱରେ ଜନାର୍ଦ୍ଦନେ ବା
ଜଗଦନ୍ତରାତ୍ମନି ।
ନ ଭେଦହେତୁଃ ପ୍ରତିପତ୍ତିରସ୍ତି ମେ ତଥାପି
ଭକ୍ତିସ୍ତରୁଣେନ୍ଦୁଶେଖରେ ॥୮୮॥

ଅନ୍ୱୟ—ଜଗତାଂ (ସମସ୍ତ ଭୁବନର) ଅଧୀଶ୍ୱରେ (ପ୍ରଭୁଙ୍କଠାରେ) ମହେଶ୍ୱରେ (ମହାଦେବଙ୍କଠାରେ) ବା ଜଗଦାନ୍ତରାତ୍ମନି (ଜଗତର ଅନ୍ତର୍ଯ୍ୟାମୀଙ୍କଠାରେ) ଜନାର୍ଦ୍ଦନେ (ନାରାୟଣଙ୍କଠାରେ) ମେ (ମୋର) ଭେଦହେତୁଃ (ଭେଦଜନକ) ପ୍ରତିପତ୍ତିଃ (ଆସକ୍ତି) ନ ଅସ୍ତି (ନାହିଁ) ତଥାପି ତରୁଣେନ୍ଦୁଶେଖରେ (ଚନ୍ଦ୍ରଶେଖର ଶିବଙ୍କଠାରେ) ଭକ୍ତିଃ (ଭକ୍ତି ଅଛି) ।

ଅର୍ଥ—ଦେବଦେବ ମହାଦେବ ଓ ଜଗତର ଆତ୍ମା ଓ ଅଧୀଶ୍ୱର ଜନାର୍ଦ୍ଦନ ଉଭୟଙ୍କଠାରେ ମୋର କୌଣସି ଭେଦଭାବନା ନାହିଁ । ତଥାପି ଯାହାଙ୍କର ମସ୍ତକରେ ଚନ୍ଦ୍ର ବିରାଜମାନ କରିଛନ୍ତି, ତାଙ୍କରିଠାରେ ମୋର ଅଚଳା ଭକ୍ତି ଅଛି ।

ରେ କନ୍ଦର୍ପ କରଂ କଦର୍ଥୟସି କିଂ କୋଦଣ୍ଡଟଙ୍କାରବୈ
ରେ ରେ କୋକିଳ କୋମଳୈଃ କଳରବୈଃ
କିଂ ତ୍ୱଂ ବୃଥାବଲ୍‌ଗସି ।

ମୁଗ୍‌ଧେ ସ୍ନିଗ୍‌ଧବିଦଗ୍‌ଧମୁଗ୍‌ଧମଧୁରୈର୍ଲୋଲୈଃ କଟାକ୍ଷୈରଲଂ
ଚେତଶ୍ଚୁମ୍ବତି ଚଂଦ୍ରଚୂଡ଼ଚରଣଧ୍ୟାନାମୃତଂ ସମ୍ପ୍ରତି ॥୮୯॥

ଅନ୍ୱୟ—ରେ କନ୍ଦର୍ପ (ରେ ମନ୍ମଥ !) କୋଦଣ୍ଡଟଙ୍କାରରବୈଃ (ଧନୁକୁ ଟଙ୍କାର କରିବାଦ୍ୱାରା) କରଂ କିଂ କଦର୍ଥୟସି (ହାତକୁ କାହିଁକି କଷ୍ଟ ଦେଉଛୁ) ରେ ରେ କୋକିଳ (ରେ କୋଇଲି) କୋମଳୈଃ କଳରବୈଃ (କୋମଳ ମଧୁର କଳରବଦ୍ୱାରା) ତ୍ୱଂ ବୃଥା କିଂ ବଲ୍‌ଗସି (ତୁ ବୃଥାରେ କାହିଁକି ଶବ୍ଦ କରୁଛୁ) ମୁଗ୍‌ଧେ (ହେ ସୁନ୍ଦରି !) ସ୍ନିଗ୍‌ଧବିଦଗ୍‌ଧମୁଗ୍‌ଧମଧୁରୈର୍ଲୋଲୈଃ (ଚତୁରତାପୂର୍ଣ୍ଣ ସ୍ନିଗ୍‌ଧମଧୁରକୁଞ୍ଚନଯୁକ୍ତ) କଟାକ୍ଷୈଃ ଅଲଂ (ଅପାଙ୍ଗଦୃଷ୍ଟିରେ ଚାହିଁବା ନିରର୍ଥକ) ସମ୍ପ୍ରତି (ବର୍ତ୍ତମାନ) ଚେତଃ (ମନ) ଚନ୍ଦ୍ରଚୂଡ଼ଚରଣଧ୍ୟାନାମୃତଂ (ମହାଦେବଙ୍କ ଚରଣ ଧ୍ୟାନ ରୂପକ ଅମୃତ) ଚୁମ୍ବତି (ପାନ କରୁଛି) ।

ଅର୍ଥ—ରେ କନ୍ଦର୍ପ ! ଧନୁରେ ଗୁଣ ଚଢ଼ାଇବା ଦ୍ୱାରା ବୃଥାରେ ହାତକୁ କାହିଁକି କଷ୍ଟ ଦେଉଛୁ । ରେ କୋକିଳ ! ତୁ ବି ବୃଥା ଟାରେ କାହିଁକି ମଧୁର କଳରବ କରୁଛୁ । ହେ ମୁଗ୍‌ଧ ! ସୁନ୍ଦରି ! ତୁମର ସ୍ନେହମୟ ମଧୁର କଟାକ୍ଷପାତର ମଧ୍ୟ କିଛି ଫଳ ହେବ ନାହିଁ । କାରଣ, ମୋର ଚିତ୍ତ ଦେବଦେବ ମହାଦେବଙ୍କ ଚରଣାରବିନ୍ଦ ଧ୍ୟାନ ରୂପକ ଅମୃତ ପାନ କରୁଛି ।

ଭୋଗା ଭଙ୍ଗୁରବୃତ୍ତୟୋ ବହୁବିଧାସ୍ତୈରେବ ଚାୟଂ ଭବ
ସ୍ତତ୍କସ୍ୟେହ କୃତେ ପରିଭ୍ରମତ ରେ ଲୋକାଃ କୃତଂ ଚେଷ୍ଟିତୈଃ ।
ଆଶାପାଶଶତୋପଶାନ୍ତିବିଶଦଂ ଚେତଃ ସମାଧୀୟତାଂ
କାମୋଚ୍ଛିତ୍ତିବଶେ ସ୍ୱଧାମନି ଯଦି ଶ୍ରଦ୍ଧେୟମସ୍ମଦ୍‌ବଚଃ ॥୯୦॥

ଅନ୍ୱୟ—ରେ ଲୋକାଃ (ହେ ଲୋକମାନେ !) ବହୁବିଧାଃ ଭୋଗାଃ ଭଙ୍ଗୁର ବୃତ୍ତୟଃ (ନାନା ପ୍ରକାର ସାଂସାରିକ ଭୋଗବିଳାସ ଅତୀବ ନଶ୍ୱର) ତୈଃ ଏବ ଅୟଂ ଭବଃ (ସେହି କ୍ଷଣଭଂଗୁର ବିଷୟରେ ଏ ସଂସାର ତିଆରି ହୋଇଛି) ତତ୍ (ତେଣୁ) କସ୍ୟ କୃତେ (କାହା ପାଇଁ) ଇହ ପରିଭ୍ରମତ (ସଂସାରରେ ବୁଲୁଛ ?) ଚେଷ୍ଟିତୈଃ କୃତଂ (ବୃଥା ଚେଷ୍ଟା କରୁଛ) ଯଦି ଅସ୍ମଦ୍ ବଚଃ ଶ୍ରଦ୍ଧେୟଂ (ଯଦି ମୋ' କଥାରେ ଶ୍ରଦ୍ଧା ଅଛି) କାମୋଚ୍ଛିତ୍ତିବଶେ

ସ୍ୱଧାମନ (ସମସ୍ତ କାମନା ବିନାଶ କରିବାରେ ସମର୍ଥ ନିଜ ହୃଦୟରେ) ଆଶାପାଶଶତୋପଶାନ୍ତିବିଶଦଂ ଚେତଃ (ଆଶା ରୂପକ ବନ୍ଧନରୁ ମୁକ୍ତ ହୋଇଥିବା ମନକୁ) ସମାଧୀୟତାଂ (ଏକାଗ୍ର ଭାବରେ ସ୍ଥାପନ କର) ।

ଅର୍ଥ—ଭୋଗବିଳାସର ଉପାଦାନଗୁଡ଼ିକ କ୍ଷଣଭଂଗୁର । ସେହି ଭୋଗ୍ୟ ବସ୍ତୁରେ ଏ ସଂସାର ତିଆରି ହୋଇଛି । ସେହି ଭୋଗ ପାଇଁ ମଣିଷ ଜନ୍ମ ହେଉଛି ଓ ଦେହ ଧାରଣ କରୁଛି । ରେ ମାନବ ! ତୁ କେଉଁ ସୁଖ ଆଶାରେ ଏ ସଂସାରରେ ଘୂରିବୁଲୁଛୁ ? ନଶ୍ୱର ଭୋଗ୍ୟ ସାମଗ୍ରୀ ପାଇବା ପାଇଁ ଚେଷ୍ଟା କରିବାର କି ପ୍ରୟୋଜନ ? ଯଦି ମୋ' କଥାରେ ବିଶ୍ୱାସ ଆସୁଛି ତେବେ ସମସ୍ତ ଅଭିଳାଷ ଦୂରକରି ନିର୍ମଳ ଚିତ୍ତ ହୋଇ ଏକାଗ୍ରଭାବେ ଆତ୍ମଚିନ୍ତାରେ ମନୋନିବେଶ କର ।

ଧନ୍ୟାନାଂ ଗିରିକନ୍ଦରେ ନିବସତାଂ ଜ୍ୟୋତିଃ ପରଂ ଧ୍ୟାୟତା-
ମାନନ୍ଦାଶ୍ରୁଜଳଂ ପିବନ୍ତି ଶକୁନା ନିଃଶଙ୍କମଙ୍କେଶୟାଃ ।
ଅସ୍ମାକଂ ତୁ ମନୋରଥୋପରଚିତପ୍ରାସାଦବାପୀତଟ-
କ୍ରୀଡ଼ାକାନନକେଳିକୌତୁକଜୁଷାମାୟୁଃ ପରଂ କ୍ଷୀୟତେ ॥୯୧॥

ଅନ୍ୱୟ—ଗିରିକନ୍ଦରେ ନିବସତାଂ (ପର୍ବତ ଗୁମ୍ଫାରେ ବାସ କରୁଥିବା) ପରଂ ଜ୍ୟୋତିଃ ଧ୍ୟାୟତାଂ (ପରଂବ୍ରହ୍ମଙ୍କୁ ଧ୍ୟାନ କରୁଥିବା) ଧନ୍ୟାନାଂ (ଧନ୍ୟ ପୁରୁଷମାନଙ୍କ) ଅଙ୍କେଶୟାଃ ଶକୁନାଃ (କୋଳରେ ଶୋଇ ପକ୍ଷୀମାନେ) ନିଃଶଙ୍କଂ (ନିର୍ଭୟରେ) ଆନନ୍ଦାଶ୍ରୁଜଳଂ ପିବନ୍ତି (ଆନନ୍ଦାଶ୍ରୁ ଜଳ ପାନ କରନ୍ତି) ତୁ (କିନ୍ତୁ) ମନୋରଥୋପରଚିତପ୍ରାସାଦବାପୀତଟକ୍ରୀଡ଼ାକାନନ-କେଳିକୌତୁକଜୁଷାମ୍ (ମନେମନେ ପରିକଳ୍ପିତ ଅର୍ଥାତ୍ ଇଚ୍ଛା ଅନୁସାରେ ନିର୍ମିତ ପ୍ରାସାଦ, ବାପୀତଟର କ୍ରୀଡ଼ୋଦ୍ୟାନରେ କେଳିକୌତୁକ ଅଭିଳାଷୀ) ଅସ୍ମାକମ୍ ଆୟୁଃ (ଆମର ଜୀବନକାଳ) କ୍ଷୀୟତେ (କ୍ଷୀଣ ହୋଇଯାଉଛି, ନିଷ୍ଫଳଭାବେ କଟିଯାଉଛି) ।

ଅର୍ଥ—ନିର୍ଜନ ପର୍ବତ ଗୁମ୍ଫାରେ ବାସକରି ଯେଉଁ ପୁଣ୍ୟାତ୍ମା ବ୍ୟକ୍ତିଗଣ ଜ୍ୟୋତିର୍ମୟ ପରଂବ୍ରହ୍ମଙ୍କୁ ଧ୍ୟାନ କରନ୍ତି, ତାଙ୍କ କୋଳରେ ବସି ପକ୍ଷୀମାନେ

ହର୍ଷସ୍ୱରେ ସେମାନଙ୍କର ଆନନ୍ଦାଶ୍ରୁ ପାନ କରନ୍ତି । କିନ୍ତୁ ଆମେ କଳ୍ପିତ ପ୍ରାସାଦ, ସରୋବର ତୀରବର୍ତ୍ତୀ ପ୍ରମୋଦ ଉଦ୍ୟାନରେ ନାନାପ୍ରକାର ଆନନ୍ଦ କୌତୁକରେ ମାତ୍ର ବୃଥାରେ ଜୀବନକାଳ ଅତିବାହିତ କରୁଛୁ ।

ଆଘ୍ରାତଂ ମରଣେନ ଜନ୍ମ ଜରୟାପ୍ୟତ୍ୟୁଜ୍ଜ୍ୱଳଂ ଯୌବନଂ
ସନ୍ତୋଷୋ ଧନଲିପ୍ସୟା ଶମସୁଖଂ ପ୍ରୌଢ଼ାଙ୍ଗନାବିଭ୍ରମୈଃ ।
ଲୋକୈର୍ମତ୍ସରିଭିର୍ଗୁଣା ବନଭୁବୋ ବ୍ୟାଳୈର୍ନୃପାଦୁର୍ଜନୈ-
ରସ୍ଥୈର୍ଯ୍ୟେଣ ବିଭୂତିରପ୍ୟପହୃତା ଗ୍ରସ୍ତଂ ନ କିଂ କେନ ବା ॥୯୬॥

ଅନ୍ୱୟ—ମରଣେନ ଜନ୍ମ ଆଘ୍ରାତଂ (ଜନ୍ମକୁ ମୃତ୍ୟୁ ଗ୍ରାସକରେ) ଅତ୍ୟୁ-ଜ୍ଜ୍ୱଳଂ ଯୌବନମ୍ ଅପି ଜରୟା (ଅତି ସୁନ୍ଦର ଯୌବନକୁ ବାର୍ଦ୍ଧକ୍ୟ) ଧନଲିପ୍ସୟା ସନ୍ତୋଷଃ (ଧନଲୋଭ ସନ୍ତୋଷକୁ) ପ୍ରୌଢ଼ାଙ୍ଗନାବିଭ୍ରମୈଃ ଶମସୁଖଂ (ବିଳାସିନୀ ଚତୁରା ରମଣୀମାନେ ଶାନ୍ତିରୂପକ ସୁଖକୁ) ମତ୍ସରିଭିଃ-ଲୋକୈଃ ଗୁଣାଃ (ଈର୍ଷ୍ୟାପରାୟଣ ଲୋକେ ସଦ୍‌ଗୁଣକୁ) ବ୍ୟାଳୈଃ ବନଭୁବଃ (ହିଂସ୍ରଜନ୍ତୁମାନେ ବନଭୂମିକୁ) ଦୁର୍ଜନୈଃ ନୃପାଃ (ଦୁଷ୍ଟ ଲୋକେ ରାଜା ବା ଶାସକମାନଙ୍କୁ) ଅସ୍ଥୈର୍ଯ୍ୟେଣ ବିଭୂତିଃ ଅପି (ଅସ୍ଥିରତା, ନଶ୍ୱରତା ସମୃଦ୍ଧିକୁ ମଧ୍ୟ) ଅପହୃତା (ନଷ୍ଟ ହୁଏ) କେନ ବା କିଂ ନ ଗ୍ରସ୍ତମ୍ (କାହାଦ୍ୱାରା କଏ ବା ନଷ୍ଟ ନହୁଏ) ।

ଅର୍ଥ—ମୃତ୍ୟୁ ସମସ୍ତଙ୍କର ଜୀବନକୁ ଗ୍ରାସ କରିଥାଏ । ସେହିପରି ଉଜ୍ଜ୍ୱଳ ରମଣୀୟ ଯୌବନକୁ ବାର୍ଦ୍ଧକ୍ୟ, ସନ୍ତୋଷକୁ ଧନଲୋଭ, ଇନ୍ଦ୍ରିୟ ଅନାସକ୍ତ-ଜନିତ ଆନନ୍ଦକୁ ତ୍ରିଗଲିତ ନାଗର ବିଳାସ, ବିନୟାଦି ସଦ୍‌ଗୁଣକୁ ଈର୍ଷ୍ୟା-ପରାୟଣ ଲୋକେ, ପବିତ୍ର ବନଭୂମିକୁ ଦୁଷ୍ଟ ହିଂସ୍ରୀ ଓ ବିଷଧରସର୍ପ, ରାଜା ବା ଶାସକମାନଙ୍କୁ କୁମନ୍ତ୍ରଣାଦାତା ଦୁଷ୍ଟ ଓ ଧନସମ୍ପଦକୁ ନଶ୍ୱରତା ବିନାଶ କରେ । ତେଣୁ ଏ ସଂସାରରେ କେଉଁ ବସ୍ତୁ ଅନ୍ୟ ବସ୍ତୁଦ୍ୱାରା ଆକ୍ରାନ୍ତ ହୁଏନାହିଁ ?

ଆଧିବ୍ୟାଧିଶତୈର୍ଜନସ୍ୟ ବିବିଧୈରାରୋଗ୍ୟମୁନ୍ମୂଲ୍ୟତେ
ଲକ୍ଷ୍ମୀର୍ଯତ୍ର ପତନ୍ତି ତତ୍ର ବିବୃତଦ୍ୱାରା ଇବ ବ୍ୟାପଦଃ ।
ଜାତଂ ଜାତମବଶ୍ୟମାଶୁ ବିବଶଂ ମୃତ୍ୟୁଃ କରୋତ୍ୟାତ୍ମସାତ୍
ତତ୍କିଂ ନାମ ନିରଙ୍କୁଶେନ ବିଧିନା ଯନ୍ନିର୍ମିତଂ ସୁସ୍ଥିତମ୍ ।।୯୩।।

ଅନ୍ୱୟ—ବିବିଧୈଃ ଆଧିବ୍ୟାଧିଶତୈଃ (ନାନାପ୍ରକାର ସାଂସାରିକ ଓ ରୋଗଜନିତ ଦୁଃଖକଷ୍ଟଦ୍ୱାରା) ଜନସ୍ୟ ଆରୋଗ୍ୟଂ (ଲୋକର ସୁଖ) ଉନ୍ମୂଲ୍ୟତେ (ନଷ୍ଟ ହୁଏ) ଯତ୍ର ଲକ୍ଷ୍ମୀଃ (ଯେଉଁଠି ଧନ ଅଛି) ତତ୍ର ବ୍ୟାପଦଃ ବିବୃତଦ୍ୱାରା ଇବ ପତନ୍ତି (ସେଠାରେ ବଡ଼ ବଡ଼ ବିପଦ ଅବାରିତଭାବେ ଆସି ପଡ଼ନ୍ତି) ଜାତଂ ଜାତଂ (ଯେତେ ଜନ୍ମ ହେଲେବି) ବିବଶଂ (ପରାଧୀନ) ଅବଶ୍ୟମ୍ ଆଶୁ (ନିଶ୍ଚୟ ଶୀଘ୍ର) ମୃତ୍ୟୁଃ ଆତ୍ମସାତ୍ କରୋତି (ମୃତ୍ୟୁ ଆତ୍ମାଧୀନ କରୁଛି ଅର୍ଥାତ୍ ମାରୁଛି) ବିଧିନା ନିରଙ୍କୁଶେନ ତତ୍ କିଂ ନାମ ନିର୍ମିତଂ (ଅପ୍ରତିହତ ବିଧାତା ଏପରି କଣ ତିଆରି କରିଛି) ଯତ୍ ସୁସ୍ଥିତମ୍ (ଯାହା ସ୍ୱାଧୀନ ଓ ଚିରକାଳ ପାଇଁ ରହିଛି ?) ।

ଅର୍ଥ—ନାନାପ୍ରକାର ସାଂସାରିକ ଓ ରୋଗବ୍ୟାଧିଜନିତ ଦୁଃଖ କଷ୍ଟରେ ମଣିଷର ସ୍ୱାସ୍ଥ୍ୟ ଓ ସୁଖ ନଷ୍ଟ ହୁଏ । ଯାହାର ଧନସମ୍ପଦ ଅଛି, ସେଠାରେ ଉନ୍ମୁକ୍ତଦ୍ୱାରବାଟେ ପ୍ରବେଶ କଲପରି ବିଭିନ୍ନ ପ୍ରକାର ବିପଦ, ସମୃଦ୍ଧିର ବିନାଶ ପାଇଁ ଅପ୍ରତିହତଭାବେ ପ୍ରବେଶ କରେ । ପ୍ରାରବ୍ଧକର୍ମଫଳ ହେତୁ ବାରମ୍ବାର ଜନ୍ମ ହେଉଥିବା ବ୍ୟକ୍ତିକୁ ମୃତ୍ୟୁ ନିଶ୍ଚିତରୂପେ ଅତି ଶୀଘ୍ର କବଳିତ କରେ । ତେଣୁ ସେହି ଅପ୍ରତିହତ ବିଧାତା ଏ ସଂସାରରେ ଚିରସ୍ଥାୟୀ ବସ୍ତୁରୂପେ କ'ଣ ସୃଷ୍ଟି କରିଛି ?

କୃଚ୍ଛ୍ରେଣାମେଧ୍ୟମଧ୍ୟେ ନିୟମିତତନୁଭିଃ ସ୍ଥୀୟତେ ଗର୍ଭଗର୍ତ୍ତେ
କାନ୍ତାବିଶ୍ଳେଷଦୁଃଖବ୍ୟତିକରବିଷମେ ଯୌବନେ ବିପ୍ରୟୋଗଃ ।
ନାରୀଣାମପ୍ୟବଜ୍ଞା ବିଲସତି ନିୟତଂ ବୃଦ୍ଧଭାବେଽପ୍ୟସାଧୁଃ
ସଂସାରେ ରେ ମନୁଷ୍ୟା ବଦତ ଯଦି ସୁଖଂ ସ୍ୱଳ୍ପମପ୍ୟସ୍ତି କିଞ୍ଚିତ୍ ।।୯୪

ଅନ୍ୱୟ—କୃଚ୍ଛ୍ରେଣ ନିୟମିତତନୁଭିଃ (ଅତି କଷ୍ଟରେ ନିୟନ୍ତ୍ରିତ ଆକାରରେ) ଅମେଧ୍ୟମଧ୍ୟେ ଗର୍ଭଗର୍ତ୍ତେ (ଅମେଧ୍ୟ ପୂର୍ଣ୍ଣ ଗର୍ଭରେ) ସ୍ଥୀୟତେ (ରହିଲ) କାନ୍ତାବିଶ୍ଲେଷଦୁଃଖବ୍ୟତିକରବିଷମେ ଯୌବନେ (ପ୍ରିୟା ବିରହ-ଜନିତ ଦୁଃଖଦ ଯୌବନକାଳରେ) ବିପ୍ରଯୋଗଃ (ବିରହକଷ୍ଟ ଭୋଗକଲ) ବୃଦ୍ଧଭାବେ (ବାର୍ଦ୍ଧକ୍ୟରେ) ଅସାଧୁଃ ଅପି (ଅସହ୍ୟ ହେଲେ ମଧ୍ୟ) ନିୟତଂ (ନିଶ୍ଚିତଭାବେ) ନାରୀଣାମ୍ ଅବଜ୍ଞା ଅପି ବିଲସତି (ସ୍ତ୍ରୀଲୋକମାନଙ୍କର ଅନାଦରଭାବ ଘଟେ) ରେ ମନୁଷ୍ୟାଃ (ରେ ମଣିଷ !) ସଂସାରେ ସ୍ୱଳ୍ପମ୍ ଅପି (ଏ ସଂସାରେ ଟିକିଏ ହେଲେବି) ଯଦି କିଞ୍ଚିତ୍ ସୁଖମ୍ ଅସ୍ତି ବଦତ (ଯଦି କିଛି ସୁଖ ଅଛି କୁହ ?) ।

ଅର୍ଥ—ମାତୃଗର୍ଭରେ ଜୀବ ନାନାପ୍ରକାର ଅପବିତ୍ର ପଦାର୍ଥ ମଧ୍ୟରେ ସଙ୍କୁଚିତ ଦେହ ନେଇ ଅତି କଷ୍ଟରେ ରହେ । ଯୌବନରେ ଆକାଙ୍‌କ୍ଷିତ ସୁଖସମ୍ଭୋଗ ପ୍ରିୟତମାର ବିୟୋଗ ଜନିତ ଦୁଃଖ ହେତୁ ବ୍ୟାହତ ହୁଏ । ବାର୍ଦ୍ଧକ୍ୟରେ ସୁନ୍ଦରୀ ନାରୀମାନଙ୍କର ଅବଜ୍ଞାଜନିତ ଅସହ୍ୟ ଦୁଃଖ ସହିବାକୁ ପଡ଼େ । ରେ ମଣିଷ ! ଏ ସଂସାରରେ ଯଦି ଟିକିଏ ହେଲେ କିଛି ସୁଖ ଅଛି, ତାହା କହ ।

ଆୟୁର୍ବର୍ଷଶତଂ ନୃଣାଂ ପରିମିତଂ ରାତ୍ରୌ ତଦର୍ଦ୍ଧଂ ଗତଂ
ତସ୍ୟାର୍ଦ୍ଧସ୍ୟ ପରସ୍ୟ ଚାର୍ଦ୍ଧମପରଂ ବାଳତ୍ୱବୃଦ୍ଧତ୍ୱୟୋଃ ।
ଶେଷଂ ବ୍ୟାଧିବିୟୋଗଦୁଃଖସହିତଂ କ୍ଲେଶାଦିଭିର୍ନୀୟତେ
ଜୀବେ ବାରିତରଙ୍ଗଚଞ୍ଚଳତରେ ସୌଖ୍ୟଂ କୁତଃ ପ୍ରାଣିନାମ୍ ॥୯୫॥

ଅନ୍ୱୟ—ନୃଣାଂ (ଲୋକମାନଙ୍କର) ଆୟୁଃ ବର୍ଷଶତଂ ପରିମିତଂ (ଜୀବନକାଳ ଶହେବର୍ଷ) ରାତ୍ରୌ ତଦର୍ଦ୍ଧଂ ଗତଂ (ରାତିରେ ଶୋଇବାରେ ଅଧେ ସମୟ ଚାଲିଯାଏ) ତସ୍ୟ ଅର୍ଦ୍ଧସ୍ୟ ପରସ୍ୟ ଅର୍ଦ୍ଧଂ [ବାକି ଅଧକରୁ (ପଚାଶ ବର୍ଷରୁ) ଅଧେ ସମୟ] ବାଲତ୍ୱବୃଦ୍ଧତ୍ୱୟୋଃ (ବାଳକ ଓ ବୃଦ୍ଧ ଅବସ୍ଥାରେ) ଶେଷଂ (ବାକି ପଚିଶବର୍ଷ) ବ୍ୟାଧିବିୟୋଗଦୁଃଖସହିତଂ (ନାନା ବ୍ୟାଧି ଓ ବିୟୋଗ ଦୁଃଖ ସହିତ) କ୍ଲେଶାଦିଭିଃ ନୀୟତେ (ନାନାବିଧ କଷ୍ଟରେ

ଅତବାହିତ ହୁଏ) ପ୍ରାଣିନାଂ ବାରିତରଙ୍ଗଚଞ୍ଚଳତରେ ଜୀବେ (ପ୍ରାଣୀ-ମାନଙ୍କର ଜଳତରଙ୍ଗ ପରି ଚଞ୍ଚଳ ଜୀବନକାଳରେ) ସୌଖ୍ୟଂ କୁତଃ (କେଉଁଥିରୁ ସୁଖ ମିଳେ ?) ।

ଅର୍ଥ—ମଣିଷର ଆୟୁ ମାତ୍ର ଶହେବର୍ଷ ବୋଲି ନିର୍ଦ୍ଧାରିତ ହୋଇଛି । ସେଥିରୁ ଅଧେ ରାତିରେ ଶୋଇବାରେ କଟିଯାଏ । ବାକି ଅଧକରୁ ଅଧେ ଅର୍ଥାତ୍ ପଚିଶ ବର୍ଷ ବାଳକ ଓ ବୃଦ୍ଧ ଅବସ୍ଥାରେ ଅତିବାହିତ ହୁଏ । ଅବଶିଷ୍ଟ ବୟସ ନାନାପ୍ରକାର ରୋଗ, ଦୁଃଖ, ପରସେବା, କଳହ, ଶୋକ, ହାନି ଇତ୍ୟାଦି ବିଭିନ୍ନ ପ୍ରକାର କ୍ଲେଶ ଭୋଗ କରିବାରେ ଚାଲିଯାଏ । ତେଣୁ ପ୍ରାଣୀମାନେ ଜଳର ଲହରୀ ପରି ଚଞ୍ଚଳ ଜୀବନକାଳ ମଧ୍ୟରେ ସୁଖ କେଉଁଠାରୁ ପାଇବେ ? ଶହେ ବର୍ଷ ବଞ୍ଚିଲେ ମଧ୍ୟ ସୁଖ ପାଇବାର ଆଦୌ ସମ୍ଭାବନା ନାହିଁ ।

ଅଭିମତମହାମାନଗ୍ରନ୍ଥିପ୍ରଭେଦପଟୀୟସୀ
ଗୁରୁତରଗୁଣଗ୍ରାମାମ୍ଭୋଜସ୍ଫୁଟୋଜ୍ଜ୍ୱଳଚନ୍ଦ୍ରିକା ।
ବିପୁଳବିଳସଲ୍ଲଜ୍ଜାବଲ୍ଲୀବିଦାରକୁଠାରିକା
ଜଠରପିଠରୀଦୁଃପୂରେୟଂ କରୋତି ବିଡ଼ମ୍ବନାମ୍ ॥୯୭॥

ଅନ୍ୱୟ—ଅଭିମତମହାମାନଗ୍ରନ୍ଥିପ୍ରଭେଦପଟୀୟସୀ (ଅଭିଳାଷ ରୂପକ ଯେଉଁ ଗଣ୍ଠି ତାକୁ ଭାଙ୍ଗିଦେବାରେ ସମର୍ଥ) ଗୁରୁତରଗୁଣଗ୍ରାମାମ୍ଭୋଜସ୍ଫୁଟୋ-ଜ୍ଜ୍ୱଳଚନ୍ଦ୍ରିକା (ପାଣ୍ଡିତ୍ୟଶୌର୍ଯ୍ୟାଦି ଗୁଣ ରୂପକ ପଦ୍ମର ବିକାଶକୁ ପ୍ରତିହତ କରିବାରେ ଉଜ୍ଜ୍ୱଳ ଚନ୍ଦ୍ରଜ୍ୟୋତ୍ସ୍ନା) ବିପୁଳବିଳସଲ୍ଲଜ୍ଜାବଲ୍ଲୀବିଦାରକୁଠାରିକା [ଲଜ୍ଜାରୂପକ ଲତାକୁ ଛେଦନ କରିବାରେ କୁଠାର (କୁରାଢ଼ି) ସଦୃଶ] ଦୁଃପୂରା (ଅତି ଦୁଃଖରେ ପୂରଣଯୋଗ୍ୟା) ଇୟଂ ଜଠରପିଠରୀ (ଏହି ପେଟ ରୂପ ଭାଣ୍ଡଟି) ବିଡ଼ମ୍ବନାଂ କରୋତି (ନାନାବିଧ ଉପଦ୍ରବ କରୁଛି) ।

ଅର୍ଥ—ମଣିଷର ସମସ୍ତ ଅଭିଳାଷ ଓ ଅଭିମାନକୁ ନଷ୍ଟଭ୍ରଷ୍ଟ କରିବାରେ ସମର୍ଥ, ପାଣ୍ଡିତ୍ୟ, ଶୌର୍ଯ୍ୟାଦି ଗୁଣରୂପକ ପଦ୍ମବନକୁ ଚିରମୁଦ୍ରିତ କରିବାରେ

ଉଜ୍ଜ୍ୱଳ ଚନ୍ଦ୍ରଜ୍ୟୋତ୍ସ୍ନା ସଦୃଶ ଓ ଲଜ୍ଜା ରୂପକ ଲତାକୁ ଛେଦନ କରିବାରେ କୁଠାର ତୁଲ୍ୟ, ଅତିଦୁଃଖରେ ପୂରଣୀୟ ଏହି ପେଟ ରୂପକ ପାତ୍ରଟି ଦୁଃଖର ମୂଳକାରଣ । ପେଟ ସ୍ତୁଖଣ୍ଡିକ ପୂରାଇବା ପାଇଁ ମଣିଷ ସବୁକିଛି କରିବାକୁ ବାଧ୍ୟ ହେଉଛି ।

ବ୍ରହ୍ମଜ୍ଞାନବିବେକନିର୍ମଳଧିୟଃ କୁର୍ବନ୍ତ୍ୟହୋ ଦୁଷ୍କରଂ
ଯନ୍ମୁଞ୍ଚନ୍ତ୍ୟୁପଭୋଗଭାଞ୍ଜ୍ୟପିଧନାନ୍ୟେକାନ୍ତତୋ ନିସ୍ପୃହାଃ ।
ନ ପ୍ରାପ୍ତାନି ପୁରା ନ ସମ୍ପ୍ରତି ନ ଚ ପ୍ରାପ୍ତୌ ଦୃଢ଼ଃ ପ୍ରତ୍ୟୟୋ
ବାଞ୍ଛାମାତ୍ରପରିଗ୍ରହାଣ୍ୟପି ପରଂ ତ୍ୟକ୍ତୁଂ ନ ଶକ୍ତାବୟମ୍ ॥୯୭॥

ଅନ୍ୱୟ—ଅହୋ (ଆଶ୍ଚର୍ଯ୍ୟ) ଅମଳଧିୟଃ (ନିର୍ମଳ ବୁଦ୍ଧି) ବ୍ରହ୍ମଜ୍ଞାନ-ବିବେକିନଃ (ପରମାର୍ଥୀମାନେ) ଦୁଷ୍କରଂ (ଅସାଧାରଣକର୍ମ) କୁର୍ବନ୍ତି (କରନ୍ତି) ଯତ୍ ଏକାନ୍ତତଃ ନିସ୍ପୃହାଃ (ପୂରାପୂରି ନିସ୍ପୃହ ଚିତ୍ତରେ) ଉପଭୋଗଭାଞ୍ଜି ଅପି ଧନାନି (ଉପଭୋଗର ସାଧନଭୂତ ହେଲେ ମଧ୍ୟ ଧନସମ୍ପଦକୁ) ମୁଞ୍ଚନ୍ତି (ତ୍ୟାଗ କରନ୍ତି) ବୟଂ (ଆମେ) ପୁରା ନ ପ୍ରାପ୍ତାନି (ପୂର୍ବରୁ ପାଇନାହୁଁ) ନ ଚ ସମ୍ପ୍ରତି (ବର୍ତ୍ତମାନ ମଧ୍ୟ ନାହିଁ) ପ୍ରାପ୍ତୌ ଚ (ପାଇବା ବିଷୟରେ ମଧ୍ୟ) ନ ଦୃଢ଼ଃ ପ୍ରତ୍ୟୟଃ (ଦୃଢ଼ ବିଶ୍ୱାସ ନାହିଁ) ପରଂ (କିନ୍ତୁ) ବାଞ୍ଛାମାତ୍ରପରିଗ୍ରହାଣି ଅପି (କାଳେ ଧନସମ୍ପଦ ପାଇଯିବୁ ଏଇ ଆଶାରେ) ତ୍ୟକ୍ତୁଂ ନ ଶକ୍ତାଃ (ସେହି କଳ୍ପିତ ଧନକୁ ତ୍ୟାଗ କରିବା ପାଇଁ ସମର୍ଥ ହୋଇପାରୁନାହୁଁ) ।

ଅର୍ଥ—ବ୍ରହ୍ମଜ୍ଞାନୀ ନିର୍ମଳ ବୁଦ୍ଧିସମ୍ପନ୍ନ ବ୍ୟକ୍ତି ନିସ୍ପୃହ ଚିତ୍ତରେ ସାଂସାରିକ ଭୋଗବିଳାସର ଆଧାରଭୂତ ଧନସମ୍ପଦକୁ ତ୍ୟାଗ କରି ଯେଉଁ ଦୁଃସାଧ୍ୟ କାର୍ଯ୍ୟ ସାଧନ କରନ୍ତି, ତାହା ନିଶ୍ଚୟ ଆଶ୍ଚର୍ଯ୍ୟଜନକ । କିନ୍ତୁ ଆମେ ପୂର୍ବରୁ ଯାହା ପାଇନାହୁଁ, ଯାହା ବର୍ତ୍ତମାନ ମଧ୍ୟ ନାହିଁ ଏବଂ ଭବିଷ୍ୟତରେ ଯାହାକୁ ପାଇବାର ନିଶ୍ଚିତ ସମ୍ଭାବନା ନାହିଁ, ସେହି କଳ୍ପିତ ବିଷୟସୁଖକୁ ତ୍ୟାଗ କରିପାରୁ ନାହୁଁ ॥

ବ୍ୟାଘ୍ରୀବ ତିଷ୍ଠତି ଜରା ପରିତର୍ଜୟନ୍ତୀ
ରୋଗାଶ୍ଚ ଶତ୍ରବ ଇବ ପ୍ରହରନ୍ତି ଦେହମ୍ ।
ଆୟୁଃ ପରିସ୍ରବତି ଭିନ୍ନଘଟାଦିବାମ୍ଭୋ
ଲୋକସ୍ତଥାପ୍ୟହିତମାଚରତୀତି ଚିତ୍ରମ୍ ॥୪୮॥

ଅନ୍ୱୟ—ଜରା (ବାର୍ଦ୍ଧକ୍ୟ) ବ୍ୟାଘ୍ରୀ ଇବ (ବାଘୁଣୀ ପରି) ପରିତର୍ଜୟନ୍ତୀ (ଭୟ ଦେଖାଇ) ତିଷ୍ଠତି (ଆଗରେ ଅଛି) ରୋଗାଃ ଚ (ରୋଗ ମଧ୍ୟ) ଶତ୍ରବ ଇବ (ଶତ୍ରୁ ପରି) ଦେହଂ (ଶରୀରକୁ) ପ୍ରହରନ୍ତି (ଆଘାତ କରୁଛନ୍ତି) ଆୟୁଃ (ଜୀବନକାଳ) ଭିନ୍ନଘଟାତ୍ (କଣା ମାଠିଆରୁ) ଅମ୍ଭ ଇବ (ଜଳ ପରି) ପରିସ୍ରବତି (କ୍ଷରିତ ହେଉଛି) ତଥାପି, ଲୋକଃ (ମଣିଷ) ଅହିତମ୍ ଅପି (ଅନ୍ୟାୟ, ଅକାର୍ଯ୍ୟ ମଧ୍ୟ) ଆଚରତି (ଆଚରଣ କରୁଛି) ଇତି ଚିତ୍ରମ୍ (ଏହାହିଁ ଆଶ୍ଚର୍ଯ୍ୟର ବିଷୟ) ।

ଅର୍ଥ—ବାର୍ଦ୍ଧକ୍ୟ ସ୍ୱରୂପ ବାଘୁଣୀ ଆଗରେ ଠିଆହୋଇଛି । ବିଭିନ୍ନ ରୋଗ ଶତ୍ରୁମାନଙ୍କ ପରି ଦେହକୁ ଆକ୍ରମଣ କରୁଛନ୍ତି । କଣା ମାଠିଆରୁ ପାଣି ବହିଗଲା ପରି ଆୟୁଷ ସରି ସରି ଆସୁଛି । ତଥାପି ଲୋକେ ନିଜର ତଥା ଅନ୍ୟର ଅମଙ୍ଗଳକର କାର୍ଯ୍ୟ କରିଯାଉଛନ୍ତି । ଏହା ବଡ଼ ଆଶ୍ଚର୍ଯ୍ୟଜନକ ବିଷୟ ।

ଭୋଗାସ୍ତୁଙ୍ଗତରଙ୍ଗଭଙ୍ଗଚପଳାଃ ପ୍ରାଣାଃ କ୍ଷଣଧ୍ୱଂସିନଃ
ସ୍ତୋକାନ୍ୟେବ ଦିନାନି ଯୌବନସୁଖଂ ସ୍ଫୂର୍ତିଃ ପ୍ରିୟେଷ୍ୱସ୍ଥିରା ।
ତତ୍ସଂସାରମସାରମେବ ନିଖିଳଂ ମତ୍ୱା ବୁଧା ଯୌବନେ
ଲୋକାନୁଗ୍ରହପେଶଲେନ ମନସା ଯତ୍ନଃ ସମାଧୀୟତାମ୍ ॥୪୯॥

ଅନ୍ୱୟ—ବୁଧାଃ (ହେ ପଣ୍ଡିତଗଣ !) ଭୋଗାଃ (ଭୋଗବିଳାସ) ତୁଙ୍ଗ-ତରଙ୍ଗଭଙ୍ଗଚପଲାଃ (ଉଚ୍ଚ ଲହରୀ ଭାଙ୍ଗି ଚୂରମାର ହେଲାପରି କ୍ଷଣସ୍ଥାୟୀ) ପ୍ରାଣାଃ (ଜୀବନ) କ୍ଷଣଧ୍ୱଂସିନଃ (ଅତି ନଶ୍ୱର) ଯୌବନସୁଖଂସ୍ତୋକାନି ଦିନାନି ଏବ (ଯୌବନ ସୁଖ ଅଳ୍ପ କେତେଦିନମାତ୍ର) ପ୍ରିୟେଷୁ (ପ୍ରିୟଜନ-

ଠାରେ) ପ୍ରୀତିଃ (ସ୍ନେହ) ଅସ୍ଥିରା (ଅତି ଅଳ୍ପସମୟ ସ୍ଥାୟୀ) ତତ୍ ନିଖିଳଂ ସଂସାରଂ (ତେଣୁ ଏହି ସାଂସାରିକ ଭୋଗବିଳାସକୁ) ଅସାରମ୍ ଏବ ମତ୍ୱା (ଅସାର ବୋଲି ମନେକରି) ଯୌବନେ (ଯୌବନକାଳରେହିଁ) ଲୋକାନୁ-ଗ୍ରହପେଶଲେନ (ପରୋପକାରପରାୟଣ) ମନସା (ଚିତ୍ତରେ) ଯତ୍ନଃ (ପ୍ରଯତ୍ନ) ସମାଧୀୟତାମ୍ (କରିବା ଉଚିତ) ।

ଅର୍ଥ—ଭୋଗବିଳାସ ଉତ୍ତୁଙ୍ଗ ତରଙ୍ଗମାଳା ପରି ଚଞ୍ଚଳ, ଜୀବନ କ୍ଷଣସ୍ଥାୟୀ, ଯୌବନକାଳୋଚିତ ରମଣୀସୁଖଭୋଗ ମାତ୍ର ଅଳ୍ପ କେତେଦିନ । ତେଣୁ ହେ ପଣ୍ଡିତଗଣ ! ସମଗ୍ର ସଂସାରକୁ ଅସାର ମନେକରି ଜୀବଜଗତର କଲ୍ୟାଣ ସାଧନ ପାଇଁ ଯତ୍ନଶୀଳ ହେବା ଉଚିତ ।

ସୃଜତି ତାବଦଶେଷଗୁଣାକରଂ
ପୁରୁଷରତ୍ନମଳଙ୍କରଣଂ ଭୁବଃ ।
ତଦପି ତତ୍କ୍ଷଣଭଙ୍ଗି କରୋତି
ଚେଦହହ କଷ୍ଟମପଣ୍ଡିତତା ବିଧେଃ ॥୧୦୦॥

ଅନ୍ୱୟ—ତାବତ୍ (ବସ୍ତୁତଃ) ଭୁବଃ ଅଳଙ୍କରଣଂ (ପୃଥିବୀର ଅଳଙ୍କାର ତୁଲ୍ୟ) ଅଶେଷଗୁଣାକରଂ (ସର୍ବଗୁଣର ଆଧାର ବା ଖଣି ସ୍ୱରୂପ) ପୁରୁଷରତ୍ନଂ (ପୁରୁଷ ରୂପକ ରତ୍ନକୁ) ସୃଜତି (ସୃଷ୍ଟି କରନ୍ତି) ତତ୍ ଅପି (ତାହାକୁ ମଧ୍ୟ) ତତ୍କ୍ଷଣଭଙ୍ଗି କରୋତି ଚେତ୍ (ଯଦି ତାକୁ କ୍ଷଣସ୍ଥାୟୀ କରନ୍ତି) ଅହହ କଷ୍ଟଂ (ବଡ଼ ଦୁଃଖର କଥା) ବିଧେଃ (ବିଧାତାର) ଅପଣ୍ଡିତତା (ମୂର୍ଖତା) ।

ଅର୍ଥ—ସୃଷ୍ଟିକର୍ତ୍ତା ବ୍ରହ୍ମା ଏକ ମହାମୂର୍ଖ । କାରଣ ଅଶେଷ ଗୁଣର ଆଧାର ଓ ପୃଥିବୀର ଅଳଙ୍କାର ସ୍ୱରୂପ ପୁରୁଷରତ୍ନକୁ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ତାକୁ କ୍ଷଣସ୍ଥାୟୀ କରିଛି । ବ୍ରହ୍ମାଙ୍କଠାରେ ଏପରି ମୂର୍ଖତା ରହିବା ନିଶ୍ଚୟ ପରିତାପର ବିଷୟ, କାରଣ ନିଜେ ତିଆରି କରିଥିବା ସୁନ୍ଦର ବସ୍ତୁକୁ କେହି କେବେହେଲେ ନଷ୍ଟ କରିଦିଏ ନାହିଁ ।

କ୍ଷଣଂ ବାଳୋ ଭୂତ୍ୱା କ୍ଷଣମପି ଚ ଯୁବା କାମରସିକଃ
କ୍ଷଣଂ ବିତ୍ତୈର୍ହୀନଃ କ୍ଷଣମପି ଚ ସମ୍ପୂର୍ଣ୍ଣବିଭବଃ !
ଜରାଜୀର୍ଣ୍ଣୈରଙ୍ଗୈର୍ନଟ ଇବ ବଳୀମଣ୍ଡିତତନୁ-
ର୍ନରଃ ସଂସାରାଙ୍କେ ବିଶତି ଯମଧାନୀଜବନିକାମ୍ ॥୧୦୧॥

ଅନ୍ୱୟ—ନରଃ, ସଂସାରାଙ୍କେ (ଲୋକ, ସଂସାରରୂପକ କୋଳରେ) ନଟ ଇବ (ଅଭିନେତା ପରି) କ୍ଷଣଂ ବାଲଃ ଭୂତ୍ୱା (କିଛିକାଳ ବାଳକ ହୋଇ) କ୍ଷଣମ୍ ଅପି ଚ (କିଛିକାଳ ମଧ୍ୟ) କାମରସିକଃ ଯୁବା (ବିଷୟାସକ୍ତ ଯୁବକ-ରୂପେ) କ୍ଷଣଂ ବିତ୍ତୈଃ ହୀନଃ (କିଛିକାଳ ଦରିଦ୍ର ହୋଇ) କ୍ଷଣମ୍ ଅପି ଚ (କିଛିକାଳ ମଧ୍ୟ) ସମ୍ପୂର୍ଣ୍ଣବିଭବଃ (ଧନଧାନ୍ୟ ପରିପୂର୍ଣ୍ଣ ହୋଇ) ବଳିମଣ୍ଡିତ-ତନୁଃ (ଶ୍ଳଥଚର୍ମ) ଜରାଜୀର୍ଣ୍ଣୈଃ ଅଙ୍ଗୈଃ (ଜରାଜୀର୍ଣ୍ଣ ହୋଇ) ଯମଧାନୀ-ଜବନିକାଂ (ଯମପୁରର ଜବନିକା ଭିତରକୁ) ବିଶତି (ପ୍ରବେଶ କରେ) ।

ଅର୍ଥ—ରଙ୍ଗମଞ୍ଚରେ ଅଭିନେତା ଅଭିନୟ କଲପରି ମଣିଷ ଏହି ସଂସାରରେ ଖୁବ୍ ଅଳ୍ପ ସମୟ ପାଇଁ ଶିଶୁ, ଯୁବକ, ଦରିଦ୍ର ଓ ଧନୀ ରୂପେ କାଳ କଟାଇଥାଏ । ଅଭିନୟ ସରିଲେ ଅଭିନେତା ଯେପରି ଯବନିକାର ଅନ୍ତରାଳକୁ ଚାଲିଯାଏ ସେହିପରି ମଣିଷ ବାର୍ଦ୍ଧକ୍ୟଜନିତ ଶିଥିଳ ଚର୍ମ ଓ ଜରାଜୀର୍ଣ୍ଣ ହୋଇ ଶେଷରେ ଯମାଳୟରେ ପ୍ରବେଶ କରେ । ତେଣୁ ଅଜ୍ଞତା-ବଶତଃ କାମନା, ବାସନା ଓ ଲାଳସାରେହିଁ ଜୀବନକାଳ କେତେବେଳେ ସରିଯାଏ ତାହା ମଣିଷ ଜାଣିପାରେ ନାହିଁ ।

ସଂମୋହୟନ୍ତି ମଦୟନ୍ତି ବିଡ଼ମ୍ବୟନ୍ତି
ନିର୍ଭର୍ତ୍ସୟନ୍ତି ରମୟନ୍ତି ବିଷାଦୟନ୍ତି ।
ଏତାଃ ପ୍ରବିଶ୍ୟ ସଦୟଂ ହୃଦୟଂ ନରାଣାଂ
କିଂ ନାମ ବାମନୟନା ନ ସମାଚରନ୍ତି ॥୧୦୨॥

ଅନ୍ୱୟ—ଏତାଃ (ଏହି) ବାମନୟନାଃ (ସୁନ୍ଦର ନୟନା ସ୍ତ୍ରୀ) ନରାଣାଂ (ଲୋକଙ୍କ) ସଦୟଂ ହୃଦୟଂ (ଦୟାର୍ଦ୍ର ହୃଦୟକୁ) ପ୍ରବିଶ୍ୟ (ପ୍ରବେଶ କରି)

ସମ୍ମୋହୟନ୍ତି (ମୋହିତ କରନ୍ତି) ମଦୟନ୍ତି (ବାଯ୍ୟା କରିଦିଅନ୍ତି) ବିଡ଼ମ୍ବୟନ୍ତି (ଅସୁବିଧାରେ ପକାନ୍ତି) ନିର୍ଭର୍ତ୍ସୟନ୍ତି (ଗାଳି ଖୁଆନ୍ତି ଓ ନିନ୍ଦିତ କରନ୍ତି) ରମୟନ୍ତି (ଖେଳାନ୍ତି) ବିଷାଦୟନ୍ତି (ଦୁଃଖିତ କରାନ୍ତି) କିଂ ନାମ ନ ସମାଚରନ୍ତି (କଣ କଣ ଯେ ନକରନ୍ତି ?) ।

ଅର୍ଥ—ଏହି ସୁନୟନା ରମଣୀଗଣ ପୁରୁଷମାନଙ୍କ ସରଳ ହୃଦୟରେ କୌଶଳକ୍ରମେ ପ୍ରବେଶ କରି ସେମାନଙ୍କୁ ମୋହିତ କରନ୍ତି, ମଦମତ୍ତ କରନ୍ତି, ବିଡ଼ମ୍ବିତ ଅର୍ଥାତ୍ ନାନାବିଧ ଅସୁବିଧାରେ ପକାନ୍ତି, ନିନ୍ଦିତ କରନ୍ତି, ଇଚ୍ଛାନୁସାରେ ଖେଳାନ୍ତି ଓ ଦୁଃଖିତ କରାନ୍ତି । କଣ କଣ ଯେ ସେମାନେ କରନ୍ତି, ତାହା କହିହେବ ନାହିଁ ।

ଯାଂ ଚିନ୍ତୟାମି ସତତଂ ମୟି ସା ବିରକ୍ତା
ସା ଚ୍ଛନ୍ୟମିଚ୍ଛତି ଜନଂ ସ ଜନୋଽନ୍ୟରକ୍ତଃ ।
ଅସ୍ମତ୍କୃତେଽପି ପରିତୁଷ୍ୟତି କାଚିଦନ୍ୟା
ଧିକ୍ ତାଂ ଚ ତଂ ଚ ମଦନଂ ଚ ଇମାଂ ଚ ମାଂ ଚ ॥୧୦୩॥

ଅନ୍ୱୟ—ସତତଂ (ସର୍ବଦା) ଯାଂ (ଯାହାକୁ) ଚିନ୍ତୟାମି (ଚିନ୍ତାକରୁଛି) ସା (ସେହି ସ୍ତ୍ରୀ) ମୟି (ମୋଠାରେ) ବିରକ୍ତା (ଅନୁରାଗଶୂନ୍ୟା) ସା ଚ (ସେ ମଧ୍ୟ) ଅନ୍ୟମ୍ ଇଚ୍ଛତି (ଅନ୍ୟ ଲୋକକୁ ଭଲପାଉଛି) ସଃ ଜନଃ (ସେହି ବ୍ୟକ୍ତି) ଅନ୍ୟରକ୍ତଃ (ଅନ୍ୟ ନାରୀଠାରେ ଆସକ୍ତ) କାଚିତ୍ ଅନ୍ୟା (ଅନ୍ୟ ଏକ ନାରୀ) ଅସ୍ମତ୍କୃତେ ଅପି (ମୋ'ପରି ଲୋକଠାରେ ମଧ୍ୟ) ପରିତୁଷ୍ୟତି (ସନ୍ତୋଷ ଲାଭ କରୁଛି) ଧିକ୍ ତାଂ (ତାକୁ ଧିକ୍) ତଂ ଚ ଧିକ୍ (ସେ ପୁରୁଷକୁ ଧିକ୍) ମଦନଂ ଚ ଇମାଂ ଚ (କନ୍ଦର୍ପକୁ ଓ ମୋଠାରେ ଆସକ୍ତା ନାରୀ) ମାଂ ଚ ଧିକ୍ ଏବଂ ମୋତେ ମଧ୍ୟ ଧିକ୍) ।

ଅର୍ଥ—ମୁଁ ଯାହା କଥା ସବୁବେଳେ ଭାବୁଛି ସେହି ନାରୀ ମୋ'ପ୍ରତି ବିରକ୍ତ ଓ ଅନ୍ୟପୁରୁଷଠାରେ ଆସକ୍ତ । ମୋ' ପ୍ରେମିକାର ସେହି ପୁରୁଷ ପୁଣି

ଅନ୍ୟ ନାରୀଠାରେ ଅନୁରକ୍ତ । ମୋତେ ପାଇ ଯେ ଆନନ୍ଦିତ ହୁଏ ସେ ଅନ୍ୟ ଜଣେ ନାରୀ । ତେଣୁ ସେ ନାରୀକୁ ଧିକ୍, ପୁରୁଷକୁ ଧିକ୍, ସେହି ବାର-ବନିତାକୁ ଧିକ୍ ଏବଂ ମୋତେ ଧିକ୍ । ପରିଶେଷରେ ଯାହା ପ୍ରେରଣାରେ ଏପରି ଘଟୁଛି ସେହି କାମଦେବକୁ ମଧ୍ୟ ଧିକ୍ !

# ପରିଶିଷ୍ଟ

## (କ) ଆନନ୍ଦାଶ୍ରମ ପ୍ରେସ୍ ୧୯୭୭ ସଂସ୍କରଣର ଅଧିକ ଶ୍ଳୋକ—

ଗାତ୍ରୈର୍ଗିରା ଚ ବିକଲଶ୍ଚଟୁମୀଶ୍ୱରାଣାଂ
କୁର୍ବନ୍ନୟଂ ପ୍ରହସନସ୍ୟ ନଟଃ କୃତୋଽସି ।
ତଂ ତ୍ୱାଂ ପୁନଃ ପଲିତକର୍ଣ୍ଣକଭାଜମେନଂ
ନାଟ୍ୟେନ କେନ ନଟୟିଷ୍ୟତି ଦୀର୍ଘମାୟୁଃ ॥୧୦୪॥

ଅର୍ଥ—ହେ ବନ୍ଧୁ ! ପ୍ରଭୁ ତୋତେ ଦୀର୍ଘାୟୁ କରିଥିବାରୁ ତୁ ହାସ୍ୟରସର ଅଭିନେତା ପରି ଏ ସଂସାରରେ ଉପହସିତ ହେଉଛୁ—ବାର୍ଦ୍ଧକ୍ୟ ହେତୁ ତୋର ଅଙ୍ଗପ୍ରତ୍ୟଙ୍ଗ ସହିତ ବଚନ ମଧ୍ୟ ।

ଭବ୍ୟଂ ଭକ୍ତଂ ତତଃ କିଂ କଦଶିତମଥବା ବାସରାନ୍ତେ ତତଃ କିଂ
କୌପୀନଂ ବା ତତଃ କିଂ କିମଥ ସିତମହଛାମ୍ବରଂ ବା ତତଃ କିମ୍ ।
ଏକା ଭାର୍ଯ୍ୟା ତତଃ କିଂ ଶତଗୁଣଗଣିତା କୋଟିରେକା ତତଃ କିଂ
ଭେକୋ ଭ୍ରାନ୍ତସ୍ତତଃ କିଂ କରିତୁରଗଣତୈର୍ବେଷ୍ଟିତୋ ବା ତତ
କିମ୍ ॥୧୦୫॥

ଅର୍ଥ—ପ୍ରତିଦିନ ମିଷ୍ଟାନ୍ନ ଭୋଜନ କଲେ କଣ ହେବ ନା ଦିନକୁ ଥରଟିଏ କଦର୍ଯ୍ୟ ଭୋଜନ ମିଳିଲେ ବି କଣ ହେବ ? ଖଣ୍ଡିଏ କୌପୀନରେ ସମସ୍ତ କଟିଗଲେ କଣ ହେବ ନା ପ୍ରତିଦିନ ଲମ୍ବଶାଟପଟାବୃତ ହୋଇ ଛତ୍ର ଚାମର ସେବା ଭୋଗ କଲେ କଣ ହେବ ? ଦୁଷ୍ଟା ହେଉ ବା ଶିଷ୍ଟା ହେଉ ଗୋଟିଏ ଭାର୍ଯ୍ୟାରେ କଣ ହେବ ନା ଶତ ଶତ ଗୁଣବତୀ ଭାର୍ଯ୍ୟା ଥିଲେ କଣ ହେବ ? ଏକା ଏକା ବୁଲିଲେ କି ଶତ ଶତ ହସ୍ତୀତୁରଗ ପରିବୃତ ହୋଇ ବୁଲିଲେ କଣ ହେବ ? ଏଥିରୁ ସମସ୍ତ ମନ୍ଦ ବା ଭଲ ଯଦି ମିଳିଲା, ତା'ପରେ

କଣ ? ତେଣୁ ଏହି ନଶ୍ୱର ସଂସାରରେ ବିନଶ୍ୱର ଦେହ ପାଇଁ ଅନନ୍ତ ପଦାର୍ଥର କୌଣସି ଆବଶ୍ୟକତା ନାହିଁ ।

ଜାତଃ କୂର୍ମଃ ସ ଏକଃ ପୃଥୁଭୁବନଭରାୟାର୍ପିତଂ ଯେନ ପୃଷ୍ଠଂ
ଶ୍ଲାଘ୍ୟଂ ଜନ୍ମ ଧ୍ରୁବସ୍ୟ ଭ୍ରମତି ନିୟମିତଂ ଯତ୍ର ତେଜସ୍ୱି ଚକ୍ରମ୍ ।
ସଞ୍ଜାତବ୍ୟର୍ଥପକ୍ଷାଃପରହିତକରଣେ ନୋପରିଷ୍ଟାନ୍ନ ଗୃଧୋ
ବ୍ରହ୍ମାଣ୍ଡୋଦୁମ୍ବରାନ୍ତର୍ମଶକବଦପରେ ଜନ୍ତବୋ ଜାତନଷ୍ଟାଃ ॥୧୦୬॥

ଅର୍ଥ—ଏହି ବିଶାଳ ପୃଥିବୀକୁ ଅକୁଣ୍ଠିତ ଚିତ୍ତରେ ଯେ ସ୍ୱପୃଷ୍ଠରେ ଧାରଣ କରିଛନ୍ତି ସେହି କୂର୍ମ ଅବତାର ଓ ସୂର୍ଯ୍ୟଚନ୍ଦ୍ର, ସପ୍ତର୍ଷିମଣ୍ଡଳ ତଥା ତାରାଗଣ ମଣ୍ଡଳାକାରରେ ଯାହାକୁ କେନ୍ଦ୍ର କରି ମହାକାଶରେ ଭ୍ରମଣ କରୁଛନ୍ତି ସେହି ଧ୍ରୁବ ଅବତାରଙ୍କ ଜନ୍ମ ସାର୍ଥକ ଓ ସର୍ବଥା ପ୍ରଶଂସନୀୟ । କିନ୍ତୁ ଉଦୁମ୍ବର ଫଳ ମଧ୍ୟବର୍ତ୍ତୀ ମଶକାକାର କ୍ଷୁଦ୍ରକୀଟ ଯେପରି କାହାରି ଉପକାର କରିପାରେ ନାହିଁ ସେହିପରି ଅନ୍ୟମାନେ ଏହି ବ୍ରହ୍ମାଣ୍ଡ ରୂପକ ଉଦର ମଧ୍ୟରେ କେବଳ ଜନ୍ମ ହେଉଛନ୍ତି ଓ ମରୁଛନ୍ତି ।

ସିଂହୋ ବଳୀ ଦ୍ୱିରଦଶୂକରମାଂସଭୋଜୀ
ସମ୍ବତ୍ସରେଣ ରତିମେତି କିଲୈକବାରମ୍ ।
ପାରାବତଃ ଖରଶିଳାକଣମାତ୍ରଭୋଜୀ
କାମୀ ଭବତ୍ୟନୁଦିନଂ ବଦ କୋଽତ୍ର ହେତୁଃ ॥୧୦୭॥

ଅର୍ଥ—ହସ୍ତୀ ବରାହପ୍ରଭୃତିଙ୍କର ମାଂସ ଭୋଜନ କରୁଥିବା ପଶୁରାଜ ସିଂହ ବର୍ଷରେ ଥରେମାତ୍ର ରତିକ୍ରୀଡ଼ା କରେ । କିନ୍ତୁ ଗୋଡ଼ି, ପଥରର କ୍ଷୁଦ୍ରଅଂଶ ଖାଇ ଜୀବନ ଧାରଣ କରୁଥିବା ପାରା ପ୍ରତିଦିନ ରତିକ୍ରୀଡ଼ାରେ ବ୍ୟାପୃତ ହୁଏ । ଏହାର କାରଣ କଣ ?

## (ଖ) ଭେଙ୍କଟେଶ୍ୱରପ୍ରେସ ୧୯୦୭ ସଂସ୍କରଣର ଅଧିକ ଶ୍ଳୋକ-

ବିବେକବ୍ୟାକୋଶେ ବିଦଧତି ସମେ ଶାମ୍ୟତି ତୃଷା
ପରିଷ୍ୱଙ୍ଗେ ତୁଙ୍ଗେ ପ୍ରସରତିତରାଂ ସା ପରିଣତିଃ ।
ଜରାଜୀର୍ଣ୍ଣୈଶ୍ୱର୍ଯ୍ୟଗ୍ରସନଗହନାକ୍ଷେପକୃପଣ-
ସ୍ତୃଷାପାତ୍ରଂ ଯସ୍ୟାଂ ଭବତି ମରୁତାମପ୍ୟଧିପତିଃ ॥୧୦୮॥

ଅର୍ଥ—ବିବେକର ବିକାଶ ଘଟିଥିଲେ ଶାନ୍ତି ଉଦୟ ହୁଏ, ତୃଷ୍ଣା ଶାନ୍ତ ହୋଇଯାଏ । କିନ୍ତୁ ବିଷୟବାସନା ସଂସର୍ଗଦ୍ୱାରା ସେହି ତୃଷ୍ଣା ବ୍ୟାପକଭାବେ ପ୍ରସାରଲାଭକରେ । ଏହା ଫଳରେ ବାର୍ଦ୍ଧକ୍ୟଗ୍ରସ୍ତ ହୋଇ ମଧ୍ୟ ଇନ୍ଦ୍ରଙ୍କ ପରି ଐଶ୍ୱର୍ଯ୍ୟଶାଳୀ ବ୍ୟକ୍ତି ତୃଷ୍ଣାକୁ ପରିତ୍ୟାଗ କରିପାରେ ନାହିଁ ।

ବିସମଳମଶନାୟ ସ୍ୱାଦୁ ପାନାୟ ତୋୟଂ
ଶୟନମବନିପୃଷ୍ଠେ ବଲ୍‌କଲେ ବାସସୀ ଚ ।
ନବଧନମଧୁପାନଭ୍ରାନ୍ତସର୍ବେନ୍ଦ୍ରିୟାଣା-
ମବିନୟମନୁମନ୍ତୁଂ ନୋତ୍ସହେ ଦୁର୍ଜନାନାମ୍ ॥୧୦୯॥

ଅର୍ଥ—ଭୋଜନ ପାଇଁ ବିବିଧ ଫଳ, ପିଇବା ପାଇଁ ମଧୁର ଜଳ, ଶୋଇବା ପାଇଁ ପୃଥିବୀପୃଷ୍ଠ ଓ ପରିଧାନ ପାଇଁ ବୃକ୍ଷର ବଲ୍‌କଳ ମିଳୁଥିବାବେଳେ, ଧନରୂପକ ମଦିରା ପାନରେ ଉନ୍ମତ୍ତ ଇନ୍ଦ୍ରିୟପରିତନ୍ତ୍ର ମୂର୍ଖ ମେସ୍ୱ ଦୁର୍ଜନଙ୍କ ଅନାଦରକୁ ନୀରବରେ ସହିବା ଆଦୌ ଉଚିତ ନୁହେଁ ।

ପୁରା ବିଦ୍ୱତ୍ତାସୀଦୁପଶମବତାଂ କ୍ଳେଶହତୟେ
ଗତା କାଳେନାସୌ ବିଷୟସୁଖସିଦ୍ଧ୍ୟୈ ବିଷୟିଣାମ୍ ।
ଇଦାନୀଂ ତୁ ପ୍ରେକ୍ଷ୍ୟ କ୍ଷିତିତଳଭୁଜଃ ଶାସ୍ତ୍ରବିମୁଖା-
ନହୋ କଷ୍ଟଂ ସାପି ପ୍ରତିଦିନମଧୋଽଧଃ ପ୍ରବିଶତି ॥୧୧୦॥

ଅର୍ଥ—ପୂର୍ବେ ଯେଉଁ ବିଦ୍ୟା ପଣ୍ଡିତମାନଙ୍କ ହୃଦୟର କ୍ଳେଶ ଦୂର କରୁଥିଲା କିଛିକାଳ ପରେ ତାହା ବିଷୟୀମାନଙ୍କ ବିଷୟସୁଖ ସିଦ୍ଧି ନିମିତ୍ତ

ବ୍ୟବହୃତ ହେଲା । ବର୍ତ୍ତମାନ ବିଷୟବାନ୍ ଅଥବା ରାଜାମାନେ ଶାସ୍ତ୍ର ଶୁଣିବା ପାଇଁ ବିମୁଖ ହେବାର ଦେଖି ସେହି ବିଦ୍ୟା କ୍ରମଶଃ ଅଧୋଗତି ଲାଭ କରୁଛି । ଏହା କେତେ ଦୁର୍ଭାଗ୍ୟର ବିଷୟ ।

> ଅତିକ୍ରାନ୍ତଃ କାଲୋ ଲଟଭଲଲନାଭୋଗସୁଭଗୋ
> ଭ୍ରମନ୍ତଃ ଶ୍ରାନ୍ତାଃ ସ୍ମ ସୁଚିରମିହ ସଂସାରସରଣୌ ।
> ଇଦାନୀଂ ସ୍ୱଃସିନ୍ଧୋସ୍ତଟଭୁବି ସମାକ୍ରନ୍ଦନଗିରଃ
> ସୁତାରୈଃ ଫୂତ୍କାରୈଃ ଶିବଶିବଶିବେତି ପ୍ରତନୁମଃ ॥୧୧୧॥

ଅର୍ଥ—ସୁନ୍ଦରୀ ସୁଭୂଷିତା ଲଲନା ଉପଭୋଗରେ ସୁଭଗ (ଯୋଗ୍ୟ) ଯୌବନ ସମସ୍ତ ଅତିବାହିତ ହୋଇଗଲା । ଦୀର୍ଘକାଳ ଧରି ସଂସାର ମାର୍ଗରେ ବୁଲି ବୁଲି କ୍ଳାନ୍ତ ହୋଇପଡ଼ିଲେ । ବର୍ତ୍ତମାନ ସ୍ୱର୍ଧୁନି ଗଙ୍ଗାନଦୀ ତୀରରେ ବସି ସେହି ସ୍ୱାମୀମାନଙ୍କୁ ନିନ୍ଦା କରିବା ସଙ୍ଗେ ସଙ୍ଗେ ଶିବ ଶିବ ଜପ କରିବା ଛଡ଼ା ଅନ୍ୟ ଉପାୟ ନାହିଁ ।

> ଭୋଗେ ରୋଗଭୟଂ କୁଳେ ଚ୍ୟୁତିଭୟଂ ବିତ୍ତେ ନୃପାଳାଦ୍ଭୟଂ
> ମୌନେ ଦୈନ୍ୟଭୟଂ ବଳେ ରିପୁଭୟଂ ରୂପେ ଜରାୟା ଭୟମ୍ ।
> ଶାସ୍ତ୍ରେ ବାଦଭୟଂ ଗୁଣେ ଖଳଭୟଂ କାୟେ କୃତାନ୍ତାଦ୍ଭୟମ୍ ।
> ସର୍ବଂ ବସ୍ତୁଭୟାନ୍ୱିତଂ ଭୁବି ନୃଣାଂ ବୈରାଗ୍ୟମେବାଭୟମ୍ ॥୧୧୨॥

ଅର୍ଥ—ଭୋଗବିଳାସରେ ରୋଗର ଭୟ, ବଂଶବୃଦ୍ଧିରେ କ୍ଷୟର ଭୟ, ଅଧିକ ଧନରେ ରାଜଭୟ, ମୌନରେ ଦୈନ୍ୟଭୟ, ଯୁଦ୍ଧରେ ଶତ୍ରୁଭୟ, ସୌନ୍ଦର୍ଯ୍ୟରେ ବାର୍ଦ୍ଧକ୍ୟ ଭୟ, ଶାସ୍ତ୍ରଜ୍ଞାନପ୍ରତିଷ୍ଠାରେ ଅପମାନ ଭୟ, ସଦ୍‌ଗୁଣରେ ଦୁର୍ଜନର ଭୟ ଓ ଶରୀରରେ ମୃତ୍ୟୁର ଭୟ ଅର୍ଥାତ୍ ସଂସାର ସମସ୍ତ ବସ୍ତୁକୁ ଭୟର କାରଣ ରୂପେ ଦେଖି ପଣ୍ଡିତମାନେ କେବଳ ବୈରାଗ୍ୟକୁ ଅଭୟର ସ୍ଥାନ ବୋଲି ଘୋଷଣା କରିଛନ୍ତି ।

> ଇୟଂ ବାଲା ମାଂ ପ୍ରତ୍ୟନବରତମିନ୍ଦୀବରଦଳ-
> ପ୍ରଭାଚୌରଂ ଚକ୍ଷୁଃ କ୍ଷିପତି କିମଭିପ୍ରେତମନୟା ।

ଗତୋ ମୋହୋଽସ୍ମାକଂ ସ୍ମରକୁସୁମବାଣବ୍ୟତିକର-
ଜ୍ୱଳଜ୍ୱାଳା ଶାନ୍ତା ତଦପି ନ ବରାକୀ ବିରମତି ॥୧୧୩॥

ଅର୍ଥ—ଏହି ବାଳା ବାରମ୍ବାର ନୀଳକମଳ ସଦୃଶ ସୁନ୍ଦର ନୟନରେ ମୋ' ଆଡ଼କୁ ଚାହୁଁଛି । କି ଅଭିଳାଷ ନେଇ ସେ ଏପରି ଚାହୁଁଛି ? ଏବେ ଆଉ କୌଣସି ମୋହ ନାହିଁ । କୁସୁମବାଣର ଆଘାତଜନିତ ଜ୍ୱାଳା ବହୁ ଆଗରୁ ଶାନ୍ତ ହୋଇଯାଇଛି । ତଥାପି ସେ ବରାକୀ (ନିର୍ବୋଧା) ନିଜ ଚେଷ୍ଟାରୁ ବିରତ ହେଉନାହିଁ ।

ଜୀର୍ଣ୍ଣା କନ୍ଥା ତତଃ କିଂ ସିତମମଳପଟ୍ଟଂ ପଟ୍ଟସୂତ୍ରଂ ତତଃ କିଂ
ଏକା ଭାର୍ଯ୍ୟା ତତଃ କିଂ ହୟକରିସୁଗଣୈରାବୃତୋ ବା
ତତଃ କିମ୍ ।
ଭକ୍ତଂ ଭୁକ୍ତଂ ତତଃ କିଂ କଦଶନମଥବା ବାସରାନ୍ତେ ତତଃ କିଂ
ବ୍ୟକ୍ତଜ୍ୟୋତିର୍ନବାନ୍ତର୍ମଥିତଭବଭୟଂ ବୈଭବଂ ବା
ତତଃ କିମ୍ ॥୧୧୪॥

ଅର୍ଥ—ଛିଣ୍ଡା କନ୍ଥା ହେଉ ଅଥବା ଶୁଭ୍ରବସ୍ତ୍ର ବା ପଟ୍ଟବସ୍ତ୍ର ପରିଧାନ କଲେ କି ଲାଭ ? ଗୋଟିଏ ସ୍ତ୍ରୀ ପାଖରେ ଥାଉ କି ହାତୀ ଘୋଡ଼ା ସହିତ ଲକ୍ଷେ ସ୍ତ୍ରୀ ପାଖରେ ଥାଆନ୍ତୁ ସେଥିରେ କଣ ହେବ ? ଉତ୍ତମ ଭୋଜନ ମିଳୁ ବା ସନ୍ଧ୍ୟାକୁ ଥରେ ମାତ୍ର କଦର୍ଯ୍ୟ ଭୋଜନ ମିଳୁ ସେଥିରେ କଣ ହେବ ? ଯାହାଦ୍ୱାରା ଭବଭୟ ଦୂର ହୋଇଯିବ, ସେହି ଜ୍ୟୋତିର୍ମୟ ବ୍ରହ୍ମକୁ ଯଦି ହୃଦୟରେ ଅନୁଭବ କରିହେଉନାହିଁ ତେବେ ସମସ୍ତ ପ୍ରକାର ବୈଭବ ପାଇ ମଧ୍ୟ କି ଲାଭ ?

ମହାଦେବୋ ଦେବଃ ସରିଦପି ଚ ସୈଷା ସୁରସରିଦ୍
ଗୁହା ଏବାଗାରଂ ବସନମପି ତା ଏବ ହରିତଃ ।

ସୁହୃଦ୍ ବା କାଳୋଽୟଂ ବ୍ରତମିଦମଦୈନ୍ୟଂ ବ୍ରତମିଦଂ
କଥଂ ବ୍ରୂମଃ ବଟବୃକ୍ଷଃ ଏବାସ୍ମୁ ଦୟିତା ॥୧୧୫॥

ଅର୍ଥ—ଦେବତାଙ୍କ ମଧ୍ୟରେ ମହାଦେବ, ନଦୀ ମଧ୍ୟରେ ଗଙ୍ଗା, ବାସଗୃହ ମଧ୍ୟରେ ଗୁମ୍ଫା, ଦଗକୁ ହୃଶଦ୍‌ବର୍ଣ୍ଣ ବସ୍ତ୍ର, କାଳକୁ ମିତ୍ର ଓ କାହାଣଠାରେ ଦୀନତା ପ୍ରକାଶ ନ କରିବା ପାଇଁ ବଦ୍ଧପରିକର ଥିବା ବ୍ୟକ୍ତି ବଟବୃକ୍ଷ ତାର ପତ୍ନୀ ବୋଲି ଆଉ କେତେଦିନ କହିବୁଲିବ ?

ସଖେ ଧନ୍ୟାଃ କେଚତ୍ ତ୍ରିଭବବନ୍ଧବ୍ୟତିକର।
ବନାନ୍ତେ ଚରନ୍ତିବିଷମବିଷୟାଶୀବିଷଗତାଃ ।
ଶରଚ୍ଚନ୍ଦ୍ରଜ୍ୟୋତ୍ସ୍ନାଧବଳଗଗନାଭୋଗସୁଭଗାଂ
ନୟନ୍ତେ ଯେ ରାତ୍ରିଂ ସୁକୃତଚୟଚିତ୍ତୈକଶରଣାଃ ॥୧୧୬॥

ଅର୍ଥ—ହେ ମିତ୍ର ! ଏ ସଂସାରରେ ଯେଉଁମାନେ ଭବବନ୍ଧନକୁ ଛିନ୍ନକରି, ବିଷୟବାସନାକୁ ବିଷବତ୍ ତ୍ୟାଗ କରି ଓ ପବିତ୍ର ହୃଦୟ ହୋଇ ବନମଧ୍ୟରେ ବସିରହି ଶରତ୍କାଳୀନ ଶୁଭ୍ରଜ୍ୟୋତ୍ସ୍ନା ଆଲୋକରେ ଆଲୋକିତ ଆକାଶ ତଳେ ସୁଖରେ ମନୋହାରିଣୀ ରାତ୍ରି ଯାପନ କରନ୍ତି ସେହି ପୁରୁଷମାନଙ୍କର ଜୀବନ ଧନ୍ୟ ।

ବାଲେ ଲୀଳାମୁକୁଳିତମମୀ ମନ୍ଥରା ଦୃଷ୍ଟିପାତାଃ
କିଂ କ୍ଷିପ୍ୟନ୍ତେ ବିରମ ବିରମ ବ୍ୟର୍ଥ ଏଷ ଶ୍ରମସ୍ତେ ।
ସଂପ୍ରତ୍ୟନ୍ୟେ ବୟମୁପରତଂ ବାଲ୍ୟମାସ୍ଥା ବନାନ୍ତେ
କ୍ଷୀଣୋ ମୋହସ୍ତୃଣମିବ ଜଗଜ୍ଜାଳମାଲୋକୟାମଃ ॥୧୧୭॥

ଅର୍ଥ—ହେ ବାଲେ ! ଲୀଳା ମୁକୁଳିତ ମନ୍ଦ ମନ୍ଦ ଦୃଷ୍ଟି ରୂପକ ବାଣ କାହିଁକି ଆମ ଉପରକୁ ମାରୁଛ ? ଶୀଘ୍ର ବିରତ ହୁଅ । ତୁମର ଏହି ପରିଶ୍ରମ ନିରର୍ଥକ । କାରଣ, ଆମର ସେହି ବାଲ୍ୟ ଅବସ୍ଥା ଏବେ ନାହିଁ । ବନରେ ରହିବା ନିମିତ୍ତ ଚିତ୍ତ ସ୍ଥିର ହୋଇସାରିଛି । ମୋହ ନଷ୍ଟ ହେବା ସଙ୍ଗେ

ସଙ୍ଗେ ଜଗତ୍‌ରୂପକ ଜାଲ ଏବେ ତୃଣପରି ମନେହେଉଛି । ତେଣୁ ମୂର୍ଖପରି ଅଯଥା ପରିଶ୍ରମ କରନାହିଁ ।

ଜ୍ଞାନଂ ସତାଂ ମାନମଦାଦିନାଶନଂ
କେଷାଞ୍ଚିଦେତନ୍ମଦମାନକାରଣମ୍ ।
ସ୍ଥାନଂ ବିବିକ୍ତଂ ଯମିନାଂ ବିମୁକ୍ତୟେ
କାମାତୁରାଣାମତିକାମକାରଣମ୍ ॥୧୧୮॥

ଅର୍ଥ—ସଜ୍ଜନଙ୍କ ଜ୍ଞାନ, ମାନ, ମଦ ଆଦି ନାଶ କଲାବେଳେ ସେହି ଜ୍ଞାନ ଦୁର୍ଜନଙ୍କ ହୃଦୟରେ ମାନ, ମଦ, ଅହଙ୍କାର ପ୍ରଭୃତି ସୃଷ୍ଟି କରେ । ସେହିପରି ଏକାନ୍ତ ସ୍ଥାନ, ସଂଯତ ପୁରୁଷଙ୍କୁ ମୁକ୍ତିସାଧନା ପାଇଁ ଉତ୍ସାହିତ କଲାବେଳେ, ସେହି ଏକାନ୍ତ ସ୍ଥାନ କାମାତୁରମାନଙ୍କ କାମସାଧନାର କାରଣ ହୋଇଥାଏ ।

ଶଯ୍ୟା ଶୈଳଶିଳା ଗୃହଂ ଗିରିଗୁହା ବସ୍ତ୍ରଂତରୂଣାଂ ତ୍ୱଚଃ
ସାରଙ୍ଗାଃ ସୁହୃଦୋନନୁ କ୍ଷିତିରୁହାଂ ବୃତ୍ତିଃ ଫଳୈଃ କୋମଳୈଃ ।
ଯେଷାଂ ନିର୍ଝରମମ୍ବୁପାନମୁଚିତଂ ରତ୍ୟୈବ ବିଦ୍ୟାଙ୍ଗନା
ମନ୍ୟେ ତେ ପରମେଶ୍ୱରାଃ ଶିରସି ଯୈର୍ବଦ୍ଧୋନ ସେବାଞ୍ଜଳିଃ ॥୧୧୯॥

ଅର୍ଥ—ଯାହାର ଶଯ୍ୟା ହେଉଛି ଶିଳାଖଣ୍ଡ, ପର୍ବତଗୁମ୍ଫା ବାସଗୃହ, ବୃକ୍ଷର ବଲ୍‌କଲ ବସ୍ତ୍ର, ବନର ହରିଣ ବନ୍ଧୁ, ବୃକ୍ଷଲତାର କୋମଳ ଫଳମୂଳ ଭୋଜନ, ଝରଣାର ସ୍ୱଚ୍ଛ ଜଳ ପାନୀୟ ଓ ବିଦ୍ୟା ସ୍ୱରୂପିଣୀ ସ୍ତ୍ରୀ ସହିତ ଯାହାର ଗଭୀର ପ୍ରୀତି ଅଛି ସେହି ପୁରୁଷଙ୍କୁ ପରମେଶ୍ୱର ରୂପେ ସମସ୍ତେ ସ୍ୱୀକାର କରନ୍ତି । ସେହି ପୁରୁଷ ସେବକ ହୋଇ ଅନ୍ୟଙ୍କୁ କେବେହେଲେ ପ୍ରଣାମ କରେନାହିଁ ।

ସତ୍ୟାମେବ ତ୍ରିଲୋକୀସରିତି ହରଶିରଶ୍ଚୁମ୍ବିନୀବଚ୍ଛଟାୟାଂ
ସଦ୍‌ବୃତ୍ତିଂ କଳ୍ପୟନ୍ତ୍ୟାଂ ବଟବିଟପିଭବୈର୍ବଲ୍‌କଳୈଃ ସତ୍‌ଫଳୈଶ୍ଚ ।

କୋଽୟଂ ବିଦ୍ୱାନ୍ ବିପତ୍ତିଜ୍ୱରଜନିତରୁଜାତୀବ ଦୁଃଖାସିକାନାଂ
ବକ୍ତ୍ରଂ ବୀକ୍ଷେତ ଦୁଃସ୍ଥେ ଯଦି ହି ନ
ବିଭୃୟାତ୍ସ୍ୱେ କୁଟୁମ୍ବେଽନୁକମ୍ପାମ୍ ॥୧୬୦॥

ଅର୍ଥ—ମହାଦେବଙ୍କ ମସ୍ତକ ଯାହାର ତୀରଭୂମି ସେହି ପୁଣ୍ୟତୋୟା ଗଙ୍ଗାତୀରବର୍ତ୍ତୀ ବୃକ୍ଷବୃକ୍ଷର ବଲ୍‌କଲ ପରିଧାନ କରି ଓ ତପସ୍ୟା ଫଳମୂଳ ଖାଇ ସୁଖରେ ଜୀବନ ନିର୍ବାହ କରିବାରେ ସମର୍ଥ କୌଣସି ବିଦ୍ୱାନ୍ କେବେହେଲେ ବିପଦ ରୂପକ ଜ୍ୱରରୁ ଜାତ ହୋଇ ଦୀର୍ଘ ନିଃଶ୍ୱାସ ତ୍ୟାଗ କରୁଥିବା ଓ କୁଟୁମ୍ବ ବୃଦ୍ଧି ପାଇଁ ଅଭିଳାଷିଣୀ ଥିବା ସ୍ତ୍ରୀର ମୁଖ ଦେଖି କାଳଯାପନ କରିବ ନାହିଁ । କାରଣ ପୁଣ୍ୟସଲିଳା ଗଙ୍ଗାନଦୀ ତୀରରେ ହିଁ ସମସ୍ତ ଆନନ୍ଦ ମିଳିଥାଏ ।

ଉଦ୍ୟାନେଷୁ ବିଚିତ୍ରଭୋଜନବିଧିସ୍ତୀବ୍ରାତିତୀବ୍ରଂ ତପଃ
କୌପୀନାବରଣଂ ସୁବସ୍ତ୍ରମମିତଂ ଭିକ୍ଷାଟନଂ ମଣ୍ଡନମ୍ ।
ଆସନ୍ନଂ ମରଣଂ ଚ ମଙ୍ଗଳସମଂ ଯସ୍ୟାଂ ସମୁତ୍ପଦ୍ୟତେ
ତାଂ କାଶୀଂ ପରିହୃତ୍ୟ ହନ୍ତ ବିବୁଧୈରନ୍ୟତ୍ର କିଂ ସ୍ଥୀୟତେ ॥୧୬୧॥

ଅର୍ଥ—ଯାହାର ଉପବନରେ ବିବିଧପ୍ରକାର ତୃପ୍ତିକର ଭୋଜନ ପ୍ରସ୍ତୁତ ହୁଏ, ଯେଉଁଠି କଠୋରତର ତପସ୍ୟା କରାଯାଇଥାଏ, ଯେଉଁଠି କୌପୀନ ପରିଧାନକୁ ଶ୍ରେଷ୍ଠ ପରିଧାନ ବୋଲି ଗ୍ରହଣ କରାଯାଏ, ଭିକ୍ଷା କରିବା ଯେଉଁଠି ଭୂଷଣ ରୂପେ ଗୃହୀତ ହୁଏ, ଯେଉଁଠାରେ ମୃତ୍ୟୁ ପରମ ମଙ୍ଗଳମୟ ବୋଲି ବିବେଚିତ ହୁଏ, ସେହି ପବିତ୍ର କାଶୀଧାମକୁ ଛାଡ଼ି ପଣ୍ଡିତମାନେ ଅନ୍ୟତ୍ର କିପରି ବାସକରନ୍ତି ?

ନାୟଂ ତେ ସମୟୋ ରହସ୍ୟମଧୁନା ନିଦ୍ରାତି ନାଥୋ ଯଦି
ସ୍ଥିତ୍ୱା ଦ୍ରକ୍ଷ୍ୟତି କୁପ୍ୟତି ପ୍ରଭୁରିତି ଦ୍ୱାରେଷୁ ଯେଷାଂ ବଚଃ ।

ଚେତସ୍ତାନପହାସ୍ୟ ଯାହି ଭବନଂ ଦେବସ୍ୟ ବିଶ୍ୱେଶିତୁ-
ର୍ନିର୍ଦ୍ଦୌବାରିକନିର୍ଦ୍ଦୟୋକ୍ତ୍ୟପରୁଷଂ ନିଃସୀମଶର୍ମପ୍ରଦମ୍ ॥୧୨୨॥

ଅର୍ଥ—ବର୍ତ୍ତମାନ ସମୟ ନାହିଁ, ମହାରାଜ ଏବେ ଏକାନ୍ତରେ ଅଛନ୍ତି, ଏବେ ଶୋଇଛନ୍ତି, ପରେ ଆସିବ ଯାଅ, ତୁମେ ବସିଥିବାର ଦେଖିଲେ ପ୍ରଭୁ ଆମ ଉପରେ କ୍ରୋଧ ପ୍ରକାଶ କରିବେ—ଏହିପରି କଥା ଯାହାର ଦ୍ୱାରସ୍ଥିତ ଦ୍ୱାରପାଳ କହେ, ତାକୁ ତ୍ୟାଗକରି ରେ ମନ ! ବିଶ୍ୱେଶ୍ୱରଙ୍କ ପାଖକୁ ଯା । ସେଠାରେ ତୋତେ ଅଟକାଇବା ପାଇଁ କେହି ଦ୍ୱାରପାଳ ନାହିଁ କି କଠୋର ଓ ନିର୍ଦ୍ଦୟ ବଚନ ଶୁଣିବାକୁ ପଡ଼େନାହିଁ । ସେ ହେଉଛନ୍ତି ଅସୀମ ସୁଖଦାୟକ । ତାଙ୍କ ଦ୍ୱାରରେ ଅନ୍ୟତ୍ର ଯିବାର ଆବଶ୍ୟକତା ନାହିଁ ।

ପ୍ରିୟସଖି ବିପଦ୍ଦଣ୍ଡବ୍ରାତପ୍ରତାପପରମ୍ପରା-
ତିପରିଚପଳେ ଚିନ୍ତାଚକ୍ରେ ନିଧାୟ ବିଧିଃ ଖଳଃ ।
ମୃଦମିବ ବଳାତ୍ପିଣ୍ଡୀକୃତ୍ୟ ପ୍ରଗଲ୍ଭକୁଳାଳବଦ୍
ଭ୍ରମୟତି ମନୋ ନୋ ଜାନୀମଃ କିମତ୍ର ବିଧାସ୍ୟତି ॥୧୨୩॥

ଅର୍ଥ—ହେ ପ୍ରିୟସଖି ! ବୁଦ୍ଧି ! ଦୁଷ୍ଟ ବ୍ରହ୍ମା ଯେ ବିଧି ନାମରେ ଅଭିହିତ, ସେ କେତେବେଳେ କଣ କରିବ ତାହା କହିହେବ ନାହିଁ । ସେହି ବିଧି ଚିନ୍ତାଚକ୍ରରେ ବଳପୂର୍ବକ ବିପଦ ସମୂହ ସହିତ ମନକୁ ଚକଟି ପିଣ୍ଡୁଳା କରି ଚତୁର କୁମ୍ଭାର ବିଭିନ୍ନ ପ୍ରକାର ପାତ୍ର ତିଆରି କଲାପରି ଘୂରେଇ ଘୂରେଇ ଆମ ମନରୁ କଣ କଣ ସୃଷ୍ଟି କରିବ ତାହା କଳନା କରିବା ସମ୍ଭବ ନୁହେଁ । ଦୁଷ୍ଟ ବିଧିର ଇଚ୍ଛାକୁ କେହି ଜାଣିପାରିବ ନାହିଁ ।

କୌପୀନଂ ଶତଖଣ୍ଡଜର୍ଜରତରଂ କନ୍ଥା ପୁନସ୍ତାଦୃଶୀ
ନିଶ୍ଚିନ୍ତଂ ସୁଖସାଧ୍ୟଭୈକ୍ଷ୍ୟମଶନଂ ଶଯ୍ୟା ଶ୍ମଶାନେ ବନେ ।
ମିତ୍ରାମିତ୍ରସମାନତାତିବିମଳା ଚିନ୍ତାତିଶୂନ୍ୟାଳୟେ
ଧ୍ୱସ୍ତାଶେଷମଦପ୍ରମାଦମୁଦିତୋ ଯୋଗୀ ସୁଖଂ ତିଷ୍ଠତି ॥୧୨୪॥

ଅର୍ଥ—ଶତଛିନ୍ନ କୌପୀନ ଖଣ୍ଡିଏ ଓ ଅନୁରୂପ କନ୍ଥାଖଣ୍ଡିଏ ଧରି, ବନା ଚନ୍ତାରେ ମିଳୁଥିବା ଭିକ୍ଷାନ୍ନ ଖାଇ, ଶ୍ମଶାନ ଅଥବା ବଣରେ ଶୋଇ, ମିତ୍ର ଓ ଶତ୍ରୁ ଉଭୟଙ୍କଠାରେ ସମାନ ଭାବ ପୋଷଣ କରି, ଶୂନ୍ୟ ଗୃହରେ ବିଶୁଦ୍ଧ ଧ୍ୟାନରେ ନିମଗ୍ନ ହୋଇ ଯାହାର ସର୍ବବିଧ ଅହଙ୍କାର ଓ ପ୍ରମାଦ ସମ୍ପୂର୍ଣ୍ଣରୂପେ ଦୂର ହୋଇଛି ତାଙ୍କ ପରି ଯୋଗୀ ଏ ସଂସାରରେ ସୁଖରେ କାଳ ଅତିବାହିତ କରନ୍ତି ।

ଗାତ୍ରଂ ସଙ୍କୁଚିତଂ ଗତିର୍ବିଗଳିତା ଭ୍ରଷ୍ଟା ଚ ଦନ୍ତାବଳି-
ଦୃଷ୍ଟିର୍ନଶ୍ୟତି ବର୍ଦ୍ଧତେ ବଧିରତା ବକ୍ତ୍ରଂ ଚ ଲାଳାୟତେ ।
ବାକ୍ୟଂ ନାଦ୍ରିୟତେ ଚ ବାନ୍ଧବଜନୋ ଭାର୍ଯ୍ୟା ନ ଶୁଶ୍ରୂଷତେ
ହା କଷ୍ଟଂ ପୁରୁଷସ୍ୟ ଜୀର୍ଣ୍ଣବୟସଃ ପୁତ୍ରୋଽପ୍ୟମିତ୍ରାୟତେ ॥୧୨୫॥

ଅର୍ଥ—ବଡ଼ ଦୁଃଖ ଓ ପରିତାପର ବିଷୟ ହେଉଛି, ବୁଢ଼ା ହୋଇଗଲେ ମଣିଷର ଦେହ ସଙ୍କୁଚିତ ହେବା ସଙ୍ଗେ ସଙ୍ଗେ ଚାଲିବା ଶକ୍ତି ମଧ୍ୟ ନଷ୍ଟ ହୋଇଯାଏ । ଦାନ୍ତଗୁଡ଼ିକ ଝଡ଼ିପଡ଼େ । ଦୃଷ୍ଟି ଓ ଶ୍ରବଣ ଶକ୍ତି ନଷ୍ଟ ହୋଇ-ଯିବାରୁ ମଣିଷ ଅନ୍ଧ ଓ ବଧିର ହୋଇଯାଏ । ପାଟିରୁ ଥପ୍ ଥପ୍ ହୋଇ ଲାଳ ବହିପଡ଼େ । ବନ୍ଧୁମାନେ ବୁଢ଼ାର କଥାକୁ ଆଦର କରନ୍ତି ନାହିଁ । ବୁଢ଼ା ହୋଇଗଲେ ନିଜର ପ୍ରିୟତମା ସ୍ତ୍ରୀ ମଧ୍ୟ ସେବା କରିବାକୁ କୁଣ୍ଠିତା ହୁଏ ଏବଂ ପୁଅ ମଧ୍ୟ ଶତ୍ରୁପରି ଆଚରଣ କରେ । ତେଣୁ ବାର୍ଦ୍ଧକ୍ୟ ଅବସ୍ଥା କିପରି ଦୁଃଖଦାୟକ ତାହା ଚିନ୍ତାକରି ବେଳ ଥାଉଁ ଥାଉଁ ପ୍ରଭୁଙ୍କଠାରେ ମନ ଲଗାଇବା ଉଚିତ ।

## (ଗ) ନବପତ୍ର ପ୍ରକାଶନ, କଲିକତା ୧୯୮୩ ସଂସ୍କରଣର ଅଧିକ ଶ୍ଳୋକ—

ଚେତଶ୍ଚିନ୍ତୟ ମା ରମାଂ ସକୃଦିମାମସ୍ଥାୟିନୀମାସ୍ଥୟା
ଭୂପାଳଭ୍ରୂକୁଟୀକୁଟୀବିହରଣବ୍ୟାପାରପଣ୍ୟାଙ୍ଗନାମ୍ ।

କନ୍ଥାକଂଚୁକିନଃ ପ୍ରବଶ୍ୟ ଭବନଦ୍ୱାରାଣି ବାରାଣସୀ-
ରଥ୍ୟାପଙ୍କ୍ତିଷୁ ପାଣିପାତ୍ରପତିତାଂ ଭିକ୍ଷାମପେକ୍ଷାମହେ ॥୧୨୬॥

ଅର୍ଥ—ରେ ଚିତ୍ତ ! ରାଜାମାନଙ୍କ ଇଙ୍ଗିତରେ ବିଚରଣ କରୁଥିବା ବାରବିଳାସିନୀମାନଙ୍କ ପରି ଅସ୍ଥିର ଓ ଚଞ୍ଚଳ ଏହି ଲକ୍ଷ୍ମୀଙ୍କୁ କେବେହେଲେ ଆଦରର ସହିତ ଚିନ୍ତା କରନା । କନ୍ଥାରେ ଆବୃତ ଦେହରେ ବାରାଣସୀର ପଥ ପାର୍ଶ୍ୱସ୍ଥ ଗୃହ ଦ୍ୱାରରେ ଭିକ୍ଷାପାତ୍ରର ଅଯାଚିତ ଭିକ୍ଷାନ୍ନ ହିଁ ଆମର କାମ୍ୟ । କାରଣ ତାହାକୁ ହିଁ ସମସ୍ତ ଶାନ୍ତି ଓ ସନ୍ତୋଷର ଆଧାରରୂପେ ଗ୍ରହଣ କରିବା ଉଚିତ ।

ବର୍ଣ୍ଣଂ ସିତଂ ଶିରସି ବୀକ୍ଷ୍ୟ ଶିରୋରୁହାଣାଂ
ସ୍ଥାନଂ ଜରାପରିଭବସ୍ୟ ତଦା ପୁମାଂସମ୍ ।
ଆରୋପିତାସ୍ଥିଶତକଂ ପରିହୃତ୍ୟ ଯାନ୍ତି
ଚଣ୍ଡାଳକୂପମିବ ଦୂରତରଂ ତରୁଣ୍ୟଃ ॥୧୨୭॥

ଅର୍ଥ—ବୃଦ୍ଧ ବ୍ୟକ୍ତିର ମସ୍ତକରେ ପକ୍ୱ କେଶରାଶି ଦେଖିବା ମାତ୍ରେହିଁ ତାକୁ ଶତ ଅସ୍ଥିଖଣ୍ଡଦ୍ୱାରା ବେଷ୍ଟିତ ଚଣ୍ଡାଳର କୂପ ପରି ଅବଜ୍ଞା କରି ତରୁଣୀମାନେ ଦୂରକୁ ଚାଲିଯାଆନ୍ତି ।

କଦା ବାରାଣସ୍ୟାମମରତଟିନୀରୋଧସି ବସନ୍
ବସାନଃ କୌପୀନଂ ଶିରସି ନିଦଧାନୋଽଞ୍ଜଳିପୁଟମ୍ ।
ଅୟେ ଗୌରୀନାଥ ତ୍ରିପୁରହର ଶମ୍ଭୋ ତ୍ରିନୟନ.
ପ୍ରସୀଦେତି କ୍ରୋଶନ୍ନିମିଷମିବ ନେଷ୍ୟାମି ଦିବସାନ୍ ॥୧୨୮॥

ଅର୍ଥ—କେବେ ବାରାଣସୀର ଦେବନଦୀ ଗଙ୍ଗା ତୀରରେ ବାସକରି, କୌପୀନମାତ୍ର ପରିଧାନ କରି, ମସ୍ତକରେ ହାତ ଦୁଇଟି ଅଞ୍ଜଳିବଦ୍ଧ କରି ରଖି, ହେ ଗୌରୀନାଥ, ହେ ତ୍ରିପୁରହର ! ହେ ଶମ୍ଭୋ ! ହେ ତ୍ରିନୟନ !

ଏହିପରି ଉଚ୍ଚସ୍ୱରରେ ପ୍ରାର୍ଥନା କରି ନିସ୍ପୃହିତଭାବେ ଦିନଗୁଡ଼ିକ ଅତିବାହିତ କରିବି ?

ତୁଙ୍ଗଂବେଶ୍ମ ସୁତାଃ ସତାମଭିମତାଃ ସଂଖ୍ୟାତିଗାଃ ସମ୍ପଦଃ
କଲ୍ୟାଣୀ ଦୟିତା ବୟଶ୍ଚ ନବମିତ୍ୟଜ୍ଞାନମୂଢୋ ଜନଃ ।
ମତ୍ୱା ବିଶ୍ୱମନଶ୍ୱରଂ ନିବିଶତେ ସଂସାରକାରାଗୃହେ
ସଂଦୃଶ୍ୟ କ୍ଷଣଭଂଗୁରଂ ତଦଖିଳଂ ଧନ୍ୟସ୍ତୁ ସନ୍ନ୍ୟସ୍ୟତି ॥୧୨୯॥

ଅର୍ଥ—ଉତ୍ତୁଙ୍ଗ ପ୍ରାସାଦ, ସଜ୍ଜନମାନଙ୍କ ଦ୍ୱାରା ପ୍ରଶଂସିତ ପୁତ୍ର, ଅତୁଳ ଧନସମ୍ପଦ, କଲ୍ୟାଣମୟୀ ପତ୍ନୀ ଓ ନୂତନ ଯୌବନକୁ ଅଜ୍ଞତାବଶତଃ ବିବେକହୀନ ବ୍ୟକ୍ତି ନିତ୍ୟବସ୍ତୁ ବୋଲି ମନେକରି ସଂସାର ରୂପକ କାରା-ଗାରରେ ବନ୍ଦୀ ହୋଇ ରହିଯାଏ । କିନ୍ତୁ ଜ୍ଞାନୀ ଓ ବିବେକୀ ବ୍ୟକ୍ତି ଯଥାର୍ଥଭାବେ ବିଚାର ପୂର୍ବକ ସମସ୍ତ ବିଷୟଭୋଗକୁ କ୍ଷଣସ୍ଥାୟୀ ବୋଲି ଜାଣି ପରିତ୍ୟାଗ କରିଥାଏ ।

ଫଳଂ ସ୍ୱେଚ୍ଛାଲଭ୍ୟଂ ପ୍ରତିବନମଖେଦଂ କ୍ଷିତିରୁହାଂ
ପୟଃ ସ୍ଥାନେ ସ୍ଥାନେ ଶିଶିର ମଧୁରଂ ପୁଣ୍ୟସରିତାମ୍ ।
ମୃଦୁସ୍ପର୍ଶା ଶଯ୍ୟା ସୁଲଳିତଲତା ପଲ୍ଲବମୟୀ
ସହନ୍ତେ ସନ୍ତାପଂ ତଦପି ଧନିନାଂ ଦ୍ୱାରି କୃପଣାଃ ॥୧୩୦॥

ଅର୍ଥ—ପ୍ରତି ବନରେ ଉଦରପୂର୍ତ୍ତି ନିମିତ୍ତ ଅନାୟାସରେ ବୃକ୍ଷର ଫଳମୂଳ ପ୍ରଚୁର ପରିମାଣରେ ଅଛି, ତୃଷା ନିବାରଣ ପାଇଁ ପବିତ୍ର ନଦୀ-ଗୁଡ଼ିକର ସୁଶୀତଳ ଓ ସୁମିଷ୍ଟ ଜଳ ଅଛି ଏବଂ ଅତିକୋମଳ ଲତାପତ୍ର ରଚିତ ସୁଖସ୍ପର୍ଶୀ ଶଯ୍ୟା ମଧ୍ୟ ଅଛି । ତଥାପି ଧନଲୋଭୀ ବ୍ୟକ୍ତିମାନେ ଧନୀମାନଙ୍କ ଦ୍ୱାରଦେଶରେ ନାନାବିଧ ଦୁଃସହ ପରିତାପ ସହ୍ୟ କରନ୍ତି ।

ଭିକ୍ଷାହାରମଦୈନ୍ୟମପ୍ରତିସୁଖଂ ଭୀତିଚ୍ଛିଦଂ ସର୍ବତୋ
ଦୁର୍ମାତ୍ସର୍ଯ୍ୟମଦାଭିମାନମଥନଂ ଦୁଃଖୌଘବିଧ୍ୱଂସନମ୍ ।

ସର୍ବସାନ୍ଦ୍ୱନ୍ଦ୍ୱମପ୍ରଯତ୍ନସୁଲଭଂ ସାଧୁପ୍ରିୟଂ ପାବନଂ
ଶମ୍ଭୋଃ ସତ୍ରମବାର୍ଯ୍ୟମକ୍ଷୟନିଧିଂ ଶଂସନ୍ତି ଯୋଗୀଶ୍ୱରାଃ ॥୧୩୧॥

ଅର୍ଥ—ଦୈବବଶତଃ ସମ୍ପଦ ଲଭରେ ସନ୍ତୁଷ୍ଟ ବ୍ୟକ୍ତିର ଆନନ୍ଦ ଉତ୍ତରୋତ୍ତର ବୃଦ୍ଧିପାଏ । କିନ୍ତୁ ଧନଲୋଭରେ ବ୍ୟାକୁଳ ବ୍ୟକ୍ତିର ବିଷୟତୃଷ୍ଣା କେବେହେଲେ ଦୂର ହୁଏନାହିଁ । ତେଣୁ ମହାଯୋଗୀମାନେ ସାଧୁମାନଙ୍କ ପ୍ରିୟ ଶମ୍ଭୁସତ୍ର ଅର୍ଥାତ୍ ସଦାବ୍ରତକୁ ପ୍ରଶଂସା କରନ୍ତି, କାରଣ ସେଥିରେ ଭିକ୍ଷାଜନିତ ହୀନତା ନାହିଁ । ତାହାଦ୍ୱାରା ସମସ୍ତ ଭୟ ଓ ଦୁର୍ଜନମାନଙ୍କ ଅସହିଷ୍ଣୁତା ଏବଂ ଯାବତୀୟ ସାଂସାରିକ ବାଧା ମଧ୍ୟ ଦୂରହୁଏ । ପ୍ରତିଦିନ ସର୍ବତ୍ର ସଦାବ୍ରତ ଅନାୟାସରେ ମିଳିଥାଏ ।

ବ୍ରହ୍ମେନ୍ଦ୍ରାଦିମରୁଦ୍‌ଗଣାଂସ୍ତୃଣକଣାଂ ଯତ୍ର ସ୍ଥିତୋ ମନ୍ୟତେ
ଯତ୍ ସ୍ୱାଦାଦ୍‌ବିରସା ଭବନ୍ତି ବିଭବାସ୍ତ୍ରୈଲୋକ୍ୟରାଜ୍ୟାଦୟଃ ।
ଭୋଗଃ କୋଽପି ସ ଏକ ପରମୋ ନିତ୍ୟୋଦିତୋ ଜୃମ୍ଭତେ
ଭୋଃ ସାଧୋ କ୍ଷଣଭଙ୍ଗୁରେ ତଦିତରେ
ଭୋଗେରତିଂ ମା କୃଥାଃ ॥୧୩୨॥

ଅର୍ଥ—ଯେଉଁ ବ୍ୟକ୍ତି ନିରତିଶୟ ନିତ୍ୟ ଆନନ୍ଦରେ ଥାଏ ସେ ବ୍ରହ୍ମା, ଇନ୍ଦ୍ର, ବାୟୁ ପ୍ରଭୃତି ଦେବତାଙ୍କୁ ତୃଣବତ୍ ଜ୍ଞାନକରେ । ବିଶେଷ ଆନନ୍ଦିତ ବ୍ୟକ୍ତି ତ୍ରିଲୋକର ଆଧିପତ୍ୟ ଓ ଐଶ୍ୱର୍ଯ୍ୟକୁ ମଧ୍ୟ ଖାତିର କରେନାହିଁ । ହେ ସାଧୁଗଣ ! ସେହି ବିଶେଷ ସୁଖକୁ ଛାଡ଼ି ଅନ୍ୟ କ୍ଷଣସ୍ଥାୟୀ ସଂସାର ସୁଖରେ ଆସକ୍ତ ହେବା ଆଦୌ ଉଚିତ ନୁହେଁ ।

ପରିଭ୍ରମସି କିଂ ମୁଧା କ୍ୱଚନ ଚିତ୍ତ ବିଶ୍ରାମ୍ୟତାଂ
ସ୍ୱୟଂ ଭବତି ଯଦ୍ୟଥା ଭବତି ତତ୍ତଥା ନାନ୍ୟଥା ।
ଅତୀତମନନୁସ୍ମରନ୍ନପି ଚ ଭାବ୍ୟ ସଂକଳ୍ପୟ-
ନ୍ନତର୍କିତସମାଗମାନନୁଭବାମି ଭୋଗାନହମ୍ ॥୧୩୩॥

ଅର୍ଥ—ରେ ମନ ! ତୁ କାହିଁକି ବୃଥା କାହାରେ ଘୂରିବୁଲୁଛୁ ? କୌଣସି ଗୋଟିଏ ଜାଗାରେ ସ୍ଥିର ହୋଇ ରହ । ଯେଉଁ କାର୍ଯ୍ୟ ହେବାର କଥା ତାହା ବିନା ଯତ୍ନରେ ଯଥା ସମୟରେ ନିଶ୍ଚୟ ହେବ । ସେଥିରେ ଅନ୍ୟଥା ହେବାର ନାହିଁ । ତେଣୁ ଅତୀତ ବିଷୟରେ ଚିନ୍ତା ବା ଅନୁତାପ ଓ ଭବିଷ୍ୟତ ବିଷୟରେ ସଂକଳ୍ପ ତ୍ୟାଗ କରି ଦୈବବଶତଃ ଲବ୍ଧ ବିଷୟସୁଖ ଭୋଗ କରିବାରେ ହିଁ ସନ୍ତୁଷ୍ଟ ରହ ।

ଏକୋ ରାଗିଷୁ ରାଜତେ ପ୍ରିୟତମାଦେହାର୍ଦ୍ଧଧାରୀ ହରୋ
ନୀରାଗେଷୁ ଜନୋ ବିମୁକ୍ତଲଲନାସଙ୍ଗୋ ନ ଯସ୍ମାତ୍ପରଃ ।
ଦୁର୍ବାରଃ ସ୍ମରବାଣପନ୍ନଗବିଷବ୍ୟାଜବିମୁଗ୍ଧୋ ଜନଃ
ଶେଷଃ କାମବିଡ଼ମ୍ବିତାନ୍ନବିଷୟାନ୍ ଭୋକ୍ତୁଂ

ନ ମୋକ୍ତୁଂ କ୍ଷମଃ ।୧୩୭।।

ଅର୍ଥ—ପ୍ରିୟତମାର ଅର୍ଦ୍ଧାଙ୍ଗଧାରୀ ମହାଦେବ ଅନୁରାଗୀ ପ୍ରେମିକମାନଙ୍କ ମଧ୍ୟରେ ଯେପରି ସର୍ବଶ୍ରେଷ୍ଠ ସେହିପରି ଅନାସକ୍ତ ଯୋଗୀମାନଙ୍କ ମଧ୍ୟରେ ବି ସର୍ବଶ୍ରେଷ୍ଠ । କିନ୍ତୁ ଦୁର୍ନିବାର ମଦନବାଣ ରୂପକ ସର୍ପ ବିଷରେ ଜର୍ଜରିତ ହୋଇ ସେହି ଯୋଗୀଶ୍ୱର ମହାଦେବ, ସାଧାରଣ ମାନବ ପରି ଭୋଗ୍ୟ ବିଷୟଗୁଡ଼ିକୁ ଉପଭୋଗ କରିପାରିଲେ ନାହିଁ କି ତ୍ୟାଗ ବି କରିପାରିଲେ ନାହିଁ ।

## ନୀତିଶିକ୍ଷା ପାଇଁ ସଂସ୍କୃତବହି
## ଯାହା ପିଲା ଓ ବଡ଼ ସମସ୍ତେ ଖୁସିରେ ପଢ଼ିବେ

| | | |
|---|---|---|
| ଶ୍ଳୋକମାଳା-୧ମ : ସଙ୍କଳନ : ଶ୍ରୀଧର ମହାପାତ୍ର ଓ ପଣ୍ଡିତ ନାରାୟଣ ମହାପାତ୍ର | | ୫-୦୦ |
| ଶ୍ଳୋକମାଳା-୨ୟ | ,, | ୬ ୦୦ |
| ଶ୍ଳୋକମାଳା-୩ୟ | ,, | ୭-୦୦ |
| ସୂକ୍ତିମାଳା | ,, | ୬-୦୦ |
| ଚାଣକ୍ୟ ନୀତିଦର୍ପଣ : ସଙ୍କଳକ ଅଧ୍ୟାପକ ଅଭିନ୍ନ ଦାଶ | | ୬-୦୦ |
| ଚାଣକ୍ୟ ସୂତ୍ରାଣି | ,, | ୬.୦୦ |
| ସଂକ୍ଷିପ୍ତ ବିଦୁରନୀତି | ,, | ୭ ୦୦ |
| ଭର୍ତ୍ତୃହରି ନୀତିଶତକ : ସଙ୍କଳକ ଡକ୍ଟର ଭଗବାନ ପଣ୍ଡା | | ୯-୦୦ |
| ଭର୍ତ୍ତୃହରି ବୈରାଗ୍ୟ ଶତକ | ,, | ୯-୦୦ |
| ନୀତିଶ୍ଳୋକ ସଂଗ୍ରହ | ,, | ୫-୦୦ |

(ଶ୍ରୀ ଶଙ୍କରାଚାର୍ଯ୍ୟ ପ୍ରଣୀତ ମଣିରତ୍ନମାଳା,
ଭଜଗୋବିନ୍ଦମ୍ ଓ ମୋହମୁଦ୍ଗର ସହ)

ସ୍ତୋତ୍ରମାଳା—ସଂକଳନ : ପଣ୍ଡିତ ନାରାୟଣ ମହାପାତ୍ର ୮-୦୦